—୧—

ଯେଉଁଠି ଦୂରର ଦିଗ୍‌ବଳୟ ସେତେ ଦୂର ନୁହେଁ, ଯାହାଁ ଦେଖିଲେ ଏପାଖେ ଡିନପା ସେପାଖେ ଡିନପା ବାଟକୁ ଆଖି ବାନ୍ଧି ହୋଇ ରହେ । ତାହାର ଭିତରେ, ଚାରିପାଖେ ଗୋଲ ହୋଇ ସୁନ୍ଦର ପାହାଡ଼ ।

ପାହାଡ଼ ଉପରେ ପାହାଡ଼ ଗଞ୍ଜା ହୋଇ ଥୁଆ ହୋଇଛି, ତା ଉପରକୁ ତା ଉପରକୁ ଅସଂଖ୍ୟ ବିମାନ ପରି, ଆଜି ମଝି ଉପତ୍ୟକାକୁ ଗଡ଼ିପଡ଼ୁଛି ସାନ ବଡ଼ କେତେ ପାହାଡ଼ର ନାସି, ତାହା ଉପରେ ସବୁଜ ଜଙ୍ଗଲ ।

ମଝିରେ ସେ ସୁନ୍ଦର ଉପତ୍ୟକା, ତାହାର ଭିତରେ ରୂପାର ହାର-ଧାର ପରି ଖଳ ଖଳ ହୋଇ ଚାଲିଛି ମୁରାନ୍ ନଈ, ପାହାଡ଼ ଦେଶର ଏମୁଣ୍ଡ଼ୁ ସେମୁଣ୍ଡ ।

ମଥା ଉପରେ ରାତିର ଚାନ୍ଦୁଆ, କଳା ପାହାଡ଼ର ବାଙ୍କେ ବାଙ୍କେ ପୂରି ରହିଛି ଅନ୍ଧାର ଆଜି ତାରା, ପାହାଡ଼ ତାକୁ ବାନ୍ଧିରଖି ପାରୁ ନାହିଁ । 'ଲୁଲ୍ଲା' ଗାଁର ଗୋଲେଇ ଘେରା ପାହାଡ଼ । ନଗୁଟିଆ ରାତିର ଆକାଶ ଆହୁରି ଦୂରକୁ ଚାଲିଛି ।

ସେଇ ଅନ୍ଧାରେ ଅନ୍ଧାରେ ପହାଡ଼ ଖୋଲର ବାଟେ ବାଟେ ଲୁଲ୍ଲା ଗାଁର ପାଞ୍ଚ ଜଣ ଲୋକ ଖୋଲକୁ ଗଡ଼ିଲେ । ଦୁଇ ପାଖେ ଘନ ଜଙ୍ଗଲ । ବାଘର ରାଜ୍ୟ ।

ହାତରେ ଖଣ୍ଡେ ଖଣ୍ଡେ ନିଆଁ ଗୋଜଣା ହଲେଇ ହଲେଇ ଠାସୁକୁ-ମଗ୍ର ବାଟରେ ବାଡ଼ ଠୁକୁ ଠୁକୁ କରି ସେମାନେ ଚାଲିଲେ, ଗାଁର ନାଇକ ରାମ ମୁଦୁଲି, ବାରିକ ଚୁଙ୍କେରି ଡମ, ଜାନି, ହରି ଜାନି ଓ ଖ୍ରୀଷ୍ଟାନ୍ ସାହ୍ବର [illegible]ାଭୀନ—ଏଲପ୍ପୋ ସୁନ୍ନା ।

ଉଚ୍ଚ ପାହାଡ଼ର ଖାଲ ପାଖକୁ ସେମାନେ ମଥାନରୁ ଗଡ଼ିଲେ । ହଠାତ୍ ଆଖି ବାନ୍ଧି ହୋଇଗଲା । ଚାରି ପାଖର ବନାପିଢ଼ା ପାହାଡ଼ରେ ଖାଲି ଦିଆଲି ମଉଛବ—ପାହାଡ଼ରେ ନିଆଁ—କେତେ ସୁନ୍ଦର । ସେପାଖ ପାହାଡ଼ରେ ବିଜୁଳିର ବାଙ୍କୁଲି ଗାର ପରି ନିଆଁ ଖେଳ ଚାଲୁଛି । କେଉଁଠି ପାହାଡ଼କୁ ଗୋଲେଇ କରିଛି । କେଉଁଠି ଗାର ଗାର, ଏପାଖ ସେପାଖ । ଅନ୍ଧାରରେ ପାହାଡ଼ ମିଶି ଯାଇଛି । ଆକାଶ ଆଜି ପାହାଡ଼ ହୋଇଛି ଏକା, ଖାଲି ଯେପରି ବିରାଟ ବିସ୍ତୃତର ନିଆଁ ଖେଳ ଅନ୍ଧାର ଦେହରେ କିଏ ଓହଳାଇ ଦେଇଛି, କେଉଁ ଅଜଣା ଯାଦୁକର—ଖାଲି ନିଆଁର ଫୁଲ, ନିଆଁର ବିଜୁଳି ଲତା, ନିଆଁର ଅଳଙ୍କାର—କୋଣ କୋଣ—ଆକାଶରୁ ପାତାଳ—ପୂର୍ବରୁ ପଶ୍ଚିମ—ଅନ୍ଧାରରେ ଆଲୁଅର ପ୍ରକାଶ ।

ବଣର ମଣିଷ ଚାହିଁ ଦେଖିଲେ, ଦୂରରେ, ନିକଟରେ ବଣର ନିଆଁର ଆଜି ଖେଳ ସତେ ଯେପରି ଅନ୍ଧାର ଶୂନ୍ୟରେ !

ଫଗୁଣର ଶେଷ ସେତେବେଳକୁ । କୋରାପୁଟର ପାହାଡ଼ ମାଳରେ ଫିରଢାସ ଶୁଖିଥାଏ । କୋରାପୁଟିଆ ବୁଟାର ଗହଳ ବୁଦା ଶୁଖିଥାଏ ।

ବଣର ଲୋକେ ଥକା ହୋଇ ଚାହିଁ ଦେଖିଲେ । ସବୁଦିନେ ଦେଖନ୍ତି, ତଥାପି ଯେଉଁଦିନ ହେଲେ ଲୁଲ୍ଲା ଖାଲକୁ ଗଡ଼ିଲେ ପାହାଡ଼ ନିଆଁର ଖେଳକୁ ଅଟକ ରହି ନ ଦେଖି ତଳକୁ ପାଦ ପକାଇ ହୁଏ ନାହିଁ ।

ଚୁଙ୍କେରି ଡମ ବାଟ ପାଖର ଶୁଖିଲା ଫିର ଜଙ୍ଗଲ କରକୁ ଯାଇ ନିଆଁ ଫୁଙ୍କିଲା, ଜଙ୍ଗଲରେ ନିଆଁ ଲଗାଇଲା, ରାମ ମୁଦୁଲି ପାଖେ, ହରି ଜାନି ସେପାଖେ ଭୁଞ୍ଜା ଖେଳ ପାଇଁ, ଦାଉ ଦାଉ ନିଆଁ ଜଳିଲା, ନିଆଁ ଚହଟିଲା, ପଛେ ପଛେ ନିଆଁ ଲଗାଇ ଲଗାଇ ବନ୍ଧୁ ପାଞ୍ଚୋଟି ତଳକୁ ତଳକୁ ଓହ୍ଲାଇଲେ, ପାହାଡ଼ର ଢାଲୁଏ ଢାଲୁଏ ।

ଗାଁ ପାଖ ହେବାରୁ ମୁହଁରେ ହସ ଫୁଟିଲା, ଆଲୁଅରେ ହସ ଜମେ । ସାତ ପାଞ୍ଚ ବର୍ଷର ପଡ଼ିଲା, ଅନ୍ଧାରରେ ଭାବନା ଧରେ । କଥା ପଡ଼ିଲା ରାତିର ଏ ବଣ ନିଆଁ, ଅନ୍ଧାରରେ ବରାହ ଜଙ୍ଗଲ ପର । କିପରି ହୁଏ, କିଏ ଚାଲୁ କରେ, କିପରି ବା ସେ ଚଢ଼ିଯାଏ ଆଜି ସୁନ୍ଦର ଦିନେ ?

ଏଲିୟୋ ପ୍ରାଚୀନ୍ ବୁଢ଼ା ଲୋକ । ଖ୍ରୀଷ୍ଟାନ୍ ହୋଇ କେତେ ଦିନ ଗଲାଣି । ବାପମା ଶରଧାରେ ନାଁ ଦେଇଥିଲେ କୁମୁଟି, ପୁଅ କାଳେ ଫପଡ଼ି ଅରଜ ଧନ୍ଦା ହେବ, ଠିକ୍ କୁମୁଟି ପରି । ଏଲିୟୋ ବୁଝେଇଲା, ଦେଖ, ଆମେ ଲଗେଇବାରୁ ନିଆଁ ଜଳୁଚି ନା ମନକୁ ? ତୁମେ ପରଜା ଲୋକ କହିବ ଭୂତ ଲଗେଇଚି ନିଆଁ, ଡୁମା ଲଗେଇଚି, ସବୁ ମିଛ କଥା ।

ଗୁଣ୍ଡେର ଡମ ପାଳି ଧରିଲା, ହଁ ମିଛ କଥା, ଡୁମା ଫୁମା ମିଛ ।

ହରି ଜାନି କହିଲା, ଏଠି ସିନା ଆମେ ଲଗେଇଛୁଁ, ହେଇ ଯେ କୋଣ କୋଣ ନିଆଁ ଲଗିଛି ଆକାଶର ଅଧାଅଧି, କେଉଁ ମଣିଷ ସେଠିକୁ ଯାଇଥିଲା ନିଆଁ ଲଗେଇବାକୁ ? ସେଇସବୁ ଆମ ପୂର୍ବପୁରୁଷ ମଲା-ଲୋକଙ୍କର କାମ । ସେମାନେ ଡୁମା । ସେମାନେ ସେଠି ନିଆଁ ଲଗାନ୍ତି ।

ଗୁଣ୍ଡେର ଡମ କହିଲା, ସତ କଥା, ସେମାନେ ନିଆଁ ଲଗାନ୍ତି । ଡୁମା ନାହିଁ କ'ଣ ?

ପ୍ରାଚୀନ୍ କହିଲା, ସେଠି ଦିନରୁ ଲୋକେ ନିଆଁ ଲଗେଇ ଆସିଥିଲେ । ରାତିରେ ମଧ୍ୟ ନିଆଁ ଲାଗି ରହିଛି । ଦିନରେ ଲୋକେ ଯାଇଥିଲେ ସେଠିକି ଆମେ ଯେମିତି ଏବାଟେ ଯାଉଛେଁ ।

ରାମ ନାଇକ ପ୍ରତିବାଦ କରି କହିଲା, ଯାଉଥିଲେ ତୁମେ ଦେଖିଛ ?

ପ୍ରାଚୀନ୍ କହିଲା, ଡୁମା ଲଗେଇଛି ତୁମେ ଦେଖିଛ ?

ହରି ଜାନି କହିଲା, କିଏ ନିଆଁ ଲଗେଇଚି ତୁମେ ଦେଖିନା ଆମେ ଦେଖି ନାହୁଁ । ତୁମେ ଭାବୁଛ ଲୋକେ ଲଗେଇଛନ୍ତି, ଆମେ ଭାବୁଛୁଁ

ଡମା, ତୁମେ କାହିଁକି ଠିକ୍ କହିବ, ଆମେ କହିବୁ ଭୁଲ୍ ? ତୁମର ତୁମେ ଠିକ୍ ଆମର ଆମେ ।

ବୃଡ଼େଶ୍ୱର କହିଲା, ସତ କଥା ।

ରାମ ନାଇକ କହିଲା, ଡୁମା ତୁହେଁ ଆଉ କଏ ଲଗେଇଛ ? ସେଇଚ ରାନ୍ତ କଲ, ତାର କଲ, ପାହାଡ଼ ଡଂଗର ସବୁ କଲ । ନିଆଁ ଲଗେଇବାକୁ ସେଇ ଏକା, ବରଷା ମାରିବାକୁ ସେଇ ଏକା—ଏ କ'ଣ ଆଜର କଥା, ଆମ ବାପାର ବାପାର ଅଜାର ଅଜାର କାଳର କଥା । ତୁମେ ତମ ଲୋକେ ବୁଝିବ ନାହିଁ । ତୁମର ସାହେବକୁ ଏମିତି ରାନ୍ତରେ ଏଠି ଠିଆକରି ନିଆଁ ଦେଖାଇ କରି ପଚ୍ଛିର ସେ କସ କହିବ—ଡୁମା ନାହିଁ ? ଏତେ ଲୋକ ମରୁଛନ୍ତି ସେମାନେ କସ୍ ହେଉଛନ୍ତି ?

ଏଲିଯ୍ୟୋ କହିଲା, ଆମର ଧର୍ମରେ ଏ ସବୁ ନାହିଁ ।

ରାମ ନାଇକ କହିଲା, ତୁମର ଧରମ ବେଶୀ ବୁଢ଼ା କି ମୁଁ ବେଶୀ ବୁଢ଼ା ସେ ଜାଣିବ । ଏ ପାହାଡ଼କୁ ଯେତକ ମତେ ସେତକ, ମୁଇଁ ମଲି, ଜନମ ହେଲି ମୋର ଦାନ୍ଧ । ମୋର ଦାନ୍ଧର ଭାଇ ମଲା, ତାର ଡୁମା ମୁଁ ଜନମ ହୋଇଛି । ମୁଁ ମରିବ, ମୋର ଡୁମା ପୁଣି ପୁଅ ହେବ । ଯେତେ-ବେଳଯାକେ ମଣିଷ ନ ହୋଇ ଡୁମା ଥିବ, ଡଂଗରେ ଡଂଗରେ ବୁଲୁଥିବ, ନିଆଁ ଲଗାଉଥିବ, ପବନ ହୋଇ ଗିର୍ଲି ଗଛର ଫୁଲ ଝାଡୁଥିବ, ମେଘ ହୋଇ ଡଂଗର ଉପରେ ଗଛ ଉପୁଜାଉଥିବ, ଅନ୍ଧାର ହୋଇ ତାର ଫୁଟ ଉଥିବ । ମୁଇଁ ଜାଣିଛି । ତୋତେ କିଛି ଜଣା ନାଇଁ ।

ଏଲିଯ୍ୟୋ କହିଲା, ଆରେ ତୁ ସେମିତି ଖାଲି କହିବୁ । ଶାସ୍ତ୍ର ପଢ଼ିବୁ ନାହିଁ । କେତେ ଛାପା ପୁସ୍ତକମାନ ପାଷ୍ଟର ପଢ଼ିକରି ଶୁଣାଇ ଦେଉଛି, ଦେଖିବୁ ସେଥିରେ କସ ଲେଖାଅଛି—

ରାମ ନାଇକ ବାଧା ଦେଇ କହିଲା, ଦେଖିଛି, ସେ ଦିନେ ପାଷ୍ଟର ଆଣିଥିଲା ଗୋଟେ ପୁସ୍ତକ । ସେଟା ନୂଆଁଟା । ଧୋବ୍ ଦିଶୁଛି, ନୂଆ ଖଦେ ପରି । ଆମର ଦିଶାରି ଘର ପୋଥି ଦେଖିବୁ, ତାଳପତ୍ରର ପୋଥି । କେତେ କଥା ସେଥିରେ ଲେଖାଅଛି । ପାଗଯୋଗ କଥା, ଭଲ ଅସାର କଥା, କଏ

କାହାର ଡୁମା ତାର କଥା, ସେଟା ପୁରୁଣାଟା, ସେଟା ଆଗ ଏ ପାହାଡ଼ ପର, ଏ ଅନ୍ଧାର ପର, ଏଟା ନୂଆଟା ।

ଏକଲବ୍ୟୋ ପ୍ରାଚୀନ୍ କହିଲା, ହଉ ଭାଇ, ତୋର ଧରମ ତତେ ମୋର ଧରମ ମତେ, ଏତେ କଥା କାହିଁକି ?

ସୁଲୋଚନ ଉମ୍ କହିଲା, ସତ କଥା ।

ତାପରେ କିଛି ସମୟ ଚୁପ୍ ଚାପ୍ । ଗାଁର ଆଲୁଅ ପାଖ ହେଲା । ରାସ୍ତାରେ ଯେଝା ଯେଝା ଦାଣ୍ଡରେ ନିଆଁ ଜାଳି ଚୂଆପିଲା ବସିଥାନ୍ତି । କେବେ ମକା, କେବେ ଛେଳି ଚମଡ଼ା ପୋଡ଼ିକରି ଖାଆନ୍ତି । ଦୂରରୁ ଆଲୁଅ ଦିଶେ । ଗାଁର ଗନ୍ଧ, ଗାର ଧୂଳି, ଗାଁର ଧୂଆଁ । ଜଙ୍ଗଲର ଦୂର ବାଟୋଇ ମନରେ ଆଶ୍ୱାସ ଦିଏ, ମା ବୁଢ଼ୀର କୋଡର ପଣତ ପରି ।

ଗାଁ ପାଖ ହେଲା । ହଠାତ୍ ଗଛରୁ ପଥ ଝଡ଼େଇ ଭୂଇଁ କମ୍ପେଇ ବଡ଼ ବାଘ ରଡ଼ି ଛାଡ଼ିଲା । ରଡ଼ି ଉପରେ ରଡ଼ି । ଏ ପାହାଡ଼ରୁ ସେ ପାହାଡ଼ ଛିଡ଼ି ଥରେଇ ରକତ ପାଣିକରି ବାଘର ହେଣ୍ଟାଳ ଘଡ଼ି ଘଡ଼ି ହୋଇ ଗଡ଼ିଗଲା । ବାଟୋଇ ପାଞ୍ଚୋଟି ଥକ୍କା ହୋଇ ଠିଆ ହୋଇଗଲେ, ଗାଁ ଧଡ଼ର ଝଙ୍କା ଝଡ଼ିଗଲା ତଳେ ।

ଏକଲବ୍ୟୋ କହିଲା, ଏଇ ସେ ପାହାଡ଼ ଉପରେ ଯାଉଛି—ବଡ଼ ବାଘ ।

ହରି ଜାନି କହିଲା, ବାଘ ନୁହେ, ବାଘ-ଡୁମା ।

ରାମ ନାଇକ କହିଲା, କେତେ ଲୋକଙ୍କୁ ତ ବାଘ ଧରି ଧରି ଖାଉଛି, କାହାର ଏ ଡୁମା ବୋବାଉଛି କେଜାଣି ?

ସୁଲୋଚନ ଉମ କହିଲା, ବାଘ କି ବାଘଡୁମା କି ? ଖାଲି ଡର ଲାଗୁଛି ଏକା ।

ବଂଧୁ ପାଞ୍ଚୋଟି ପୁଣି ଆଗେଇ ଚାଲିଲେ । ଗାଁରୁ ଡାକ ଆସିଲା, କିଏ ଯାଉଚ ?

ଘର ପାଖ ହେଲା ।

—୨—

ତହିଁ ଆରଦିନ ଗ୍ରାମ ନାଇକ ପଞ୍ଚାୟତ ଡାକିଲା ।

ଗୋଟିଏ ଝଂକା ବରଗଛ ମୂଳରେ ଗାଁର ସଦର ଦାଣ୍ଡ । ଘରପାଖେ ଖାଲି ଗୋଜିଆ ଗୋଜିଆ ପଥର । ଯେତେ ପୁରୁଷ ମରନ୍ତି ପ୍ରତ୍ୟେକଙ୍କ ପାଇଁ ଖାଲି ସ୍ମୃତି ରଖିବା ଉଦ୍ଦେଶ୍ୟରେ ସିଧା ହୋଇ ଖଣ୍ଡିଏ ଲେଖା ପଥର ଆଉ ଯେତେ ସ୍ତ୍ରୀଲୋକ ମରନ୍ତି, ପ୍ରତିଜଣ ପାଇଁ ଚଟା ହୋଇ ଖଣ୍ଡେ ଲେଖା ପଥର ପୋତା ହୁଏ । ମଝିରେ ଏମୁଣ୍ଡ ସେମୁଣ୍ଡ କେଇଖଣ୍ଡ ପଥର ଚଟାଣ ପଡ଼ିରହିଥାଏ, ବସି ପଞ୍ଚାଏତ କରିବାକୁ ନୋହିଲେ ରାତିବେଳେ ଗାଁ ଧାଙ୍ଗଡ଼ୀଙ୍କର ନାଚ ଦେଖିବାକୁ ।

ମଝିରେ ବସିଲା ଦଶାରି ବୁଢ଼ା । ଲନ୍ଧା ମଦ ପିଇ ଆଖି ତାର ପାଣିଚିଆ ଦିଶୁଥାଏ, ଓଠ ଫଣଫଣ । ପାଖରେ ଗୋଟିଏ ଝୁଲା ମୁଣି, ତହିଁରେ କ'ଣ ଅଛି ଦେଖିବାକୁ ପିଲାମାନେ ବାପ ମା'ଙ୍କ ପିଠିଆଡ଼ୁ ଉଙ୍କି ମାରନ୍ତି । ପାଖରେ ଖଣ୍ଡେ ତେଲଚିକଟା ତାଳପତ୍ରର ପୋଥି, ଆଉ ବର୍ଣ୍ଣ ବର୍ଣ୍ଣର ରଙ୍ଗ ମୁରୁଜ, ଘିଲଆ ଫଳ, କାଉଁରି ହାଡ଼, ଘିପ ଶଳତା; ଖଡ଼ି ଓ ଚିହ୍ନକରା କାଠର ବଙ୍କା, ଉଲ୍ଲି ଓ ଖଣ୍ଡା । ଗାଁର ସମସ୍ତେ ଜମିଲେ । ଗମ୍ଭୀର ହୋଇ ବସିଥାନ୍ତି । କାହାରି ତୁଣ୍ଡରେ ପଦେ କଥା ନାହିଁ ।

ଗ୍ରାମ ନାଇକ କଥା ଆରମ୍ଭିଲା, କହ କହ ଦଶାରି ବୁଢ଼ା କହ । ଦଶାରି କହିଲା, ଯୋଗ ଠିକ ଅଛି, ଆଗ ଗୁରୁମାଈ ଉଠୁ ।

ଶାମ ଗୁରୁମାଈ ଥିର ହୋଇ ଉଠିପଡ଼ି ଦଶାରି ପାଖକୁ ଗଲା । ସେ ପୁରୁଷ, କିନ୍ତୁ ତାର ମୁଣ୍ଡରେ ଲମ୍ବ ବାଳ, ନାକରେ ନୋଲକ, ଦେହରେ ମାଇକିନା ପରି ଲୁଗା ପିନ୍ଧା ହୋଇଛି । ଗାଁର ଲୋକ କହନ୍ତି, ସେ ପୁରୁଷ ନୁହେଁ କି ସ୍ତ୍ରୀ ନୁହେଁ, ତେଣୁ ତାଠି ଈଶ୍ୱରକଳା ଅଛି । କାଳିସି ଲଗିବାକୁ ତାହା ଛଡ଼ା ଆଉ କେହି ହେଲେ ଚଳିବ ନାହିଁ, ତେଣୁ ସେ ଗୁରୁମାଈ । ପ୍ରତି ଗାଁରେ ଗୁରୁମାଈ ଅଛନ୍ତି । ଯାହାଙ୍କ ବାପ ମା ପିଲାଦିନେ ତାଙ୍କୁ କୌଣସି କାରଣରୁ ଅବା ଦିଅଁଙ୍କୁ ପାଣି ଛଡ଼େଇ ଦିଅନ୍ତି,

ସେମାନେ ଗୁ ରୁମାଣ୍ଡ । ସେମାନେ ଗୋପୀ ଭବାପଲ୍ଲ । ଅନ୍ୟବେଳେ ଯାହା ହୁଅନ୍ତୁ ପୂଜା ବେଳେ ସେମାନେ ନାଗ୍ର ।

ଶାମ ଗୁ ରୁମାଣ୍ଡ ଦଶାରପାଖେ ଯାଇ ଠିଆ ହେଲା । ଦଶାର ମୂ ରୁଜ ପାଶଲା, ଶଳଡାରେ ନଆଁ ଲଗାଇଲା । ଅଭୁଆଡ଼ାପିଲା ଗୋଟିଏ ନଆଁ ଜାଳ ଦୋ'ଟି ଗଛ ସନ୍ଧଦେଲା । ପଷଠଙ୍କାରେ ଡାକୁ ରଗି ଭଲଆ ଫଳ ବଞ୍ଚ ଜଳନ୍ତା ଶଳଡାଟି ଯାପଲ୍ଲେଁ ଦଶାର ଗୁ ରୁମାଙ୍କ ମୂ ଣ୍ଡରେ କଛୁ ସମସ୍ତ ଥୋଇ ଓଠ ଥରେଇ ଥରେଇ କଣ ସବୁ ମନ୍ତ୍ର ବୋଲଲା । ଦାଣ୍ଡର ଗୋଟିଏ ପାଖରୁ ଡମବାଇଦ ବାଜ ଉଠିଲା । ଦଶାର କାଠର ତରବାର କାଠର ଭଲ୍ଲ ଗୁ ରୁମାଙ୍କକୁ ହାତରେ ଦେଲା । ଗୁ ରୁମାଣ୍ଡକୁ କାଲସି ଲାଗିଲା ।

ତାପର ଘଣ୍ଟାଏ କାଳ ଖାଲି ବାଇଦ ବାଜଣା ଆଉ ଖରୁଏ ଖରୁଏ ଗାଁଯାକ ଖାଲି ଗୁ ରୁମାଣ୍ଡର ନାଚ । ଗୁରୁମାଙ୍କ ସାଙ୍ଗେ ସାଙ୍ଗେ ଗାଁର କେତେ ସ୍ତ୍ରୀଲୋକ ବାଳ ମୁକୁଳା କରି ନାଚ ନାଚ ଧାଉଁଥାନ୍ତି, ହୁକ ଆଗରେ କୁକୁଡ଼ା ବଳ ପଡ଼ୁଥାଏ, ପାରା ବଳ ପଡ଼ୁଥାଏ । ଧୂଳ ଉଡ଼େଇ ଗୁ ରୁମାଣ୍ଡ ନାଚୁଥାଏ । ଶାମ ଗୁ ରୁମାଣ୍ଡ ଭଲ ନାଚେ । ଦେଖିଲେ ଯେଡ଼େ ଗୁଣ ହେଉ ମଣିଷ ତା'ଟଙ୍କା ହୋଇଯିବ ।

ଗୁ ରୁମାଣ୍ଡ ଚିତ୍କାର କରି କହିଲା, କାଲ ଏତେ ରଡ଼ ଦେଲ ଗଡ ପହିଲ ଘଡ଼ରେ । ଆଗରୁ କେତେ ଥର ଏପରି ରଡ଼ ଦେଲଣି, ତୁମେ ଶୁଣୁ ନା, ତନ ଥର କହିଲ, ଖାଇବ ଖାଇବ ଖାଇବ ।

ଗାଁର ପିଲା ବୁଢ଼ା ସମସ୍ତେ ଏକପାଖିଆ ହୋଇ ଠିଆ ହୋଇ-ଥାନ୍ତି । ସେ ମୁଣ୍ଡରେ ଦଶାର ବୁଢ଼ା ଦୋହଲ ଦୋହଲ ଲମ୍ବା ମଦ ଟିକଏ ପିଉଥାଏ ଗୋଟିଏ ଆଟିକାରୁ । ଗୁ ରୁମାଣ୍ଡ ମୁହଁରୁ କଥା ବାହାରୁଣୁ ନ ବାହାରୁଣୁ ପବନ ହାବୁକାରେ ମାଣ୍ଡିଆ କ୍ଷେତ ପରି ସମସ୍ତେ ଲଇଁପଡ଼ ହାତରେ ମୁହଁ ଘୋଡ଼େଇ ହାପୁ ହାପୁ କଲେ ।

ଗୁ ରୁମାଣ୍ଡ ପୁଣି କହିଲା, ଖାଇବ ଖାଇବ ଖାଇବ ।

ଲୋକେ ଆହୁରି ଆଉଜି ପଡ଼ିଲେ, ହେମେ ମେଞ୍ଜୁ ମଞ୍ଜୁ ହୋଇ ଦେଉଣ'ଯାକ ଲୋକ ମୁହଁ ମାଡ଼ି ତଳେ ପଡ଼ି ବିକଳ ହୋଇ ଚିତ୍କାର କଲେ, ହାପୁ ହାପୁ ହାପୁ ।

ଗୁରୁମାଈ କହିଲା, ମୁଁ ଦାଦ-ବୁଢ଼ା । ତୁମ ସମସ୍ତିଙ୍କୁ ସର୍ଜନା କରିଛି ମୁଁ, ମତେ ତୁମେ ମାନୁ ନାହିଁ । ସବୁ ଗାଁରେ ଦାଦ-ବୁଢ଼ାର ପୂଜା । ତୁମ ଗାଁରେ ନାହିଁ । ତୁମେ ମତେ କୁକୁଡ଼ା ଦେଲ ନାହିଁ, ପାରା ଦେଲ ନାହିଁ, ଛେଳି ଦେଲ ନାହିଁ, ପାଣି ଦେଲ ନାହିଁ, ଭୋକ ଶୋଷରେ ଦରମରା ହୋଇ ମୁଁ ଡୁଙ୍ଗରେ ଡୁଙ୍ଗରେ ବୁଲି ବୁଲି ମରୁଛି । ଶେଷ ଚାକଦ୍ ଦେଲି, ଆଜି ଚନ୍ଦନ ଅଂନେଇବ । ତା ପରେ ଖାଇବ ଖାଇବ ଖାଇବ ।

ଚନ୍ଦନ ନା ଶୁଣି ପିଣ୍ଡରେ ପ୍ରାଣ ଆଇଲା । ନର୍ଜାବା ଡମଟୋଲ ଜୀବନ ପାଇ ଚେଇଁ ଉଠିଲା, ଦାଣ୍ଡ କମ୍ପିଲା, ବାଜାର ତାଳେ ତାଳେ ଗାଁର ଅଂଧୋରଦୁଆର ନାଚଲେ । ବୋଦା ପଡ଼ିଲା, ପାରା କୁକୁଡ଼ା ତଣ୍ଟି କଟାହୋଇ ଭୂଇଁରେ ପଡ଼ି ଫଡ଼ ଫଡ଼ ହେଲେ । ପିଚ ପିଚ ରକ୍ତରେ ଦାଦ-ବୁଢ଼ାର ମୁହଁରେ ପିଚକାରି ମରହେଲା । ଦାଦ-ବୁଢ଼ାର ପୂଜା ହେଲା ।

ତାପରେ ଗୁରୁମାଈ ଏକା ଦଉଡ଼ାକେ ଗାଁ ଉପରକୁ ଧାଇଁଲା । ପଛେ ପଛେ ନାଚ ନାଚ ଗାଁର ଭୁଆସୁଣୀମାନେ ଧାଇଁଲେ । ମଝିରେ ଖଣ୍ଡେ ସାନ ମୁଣ୍ଡିଆ । ଗୁରୁମାଈ କୁଦା ମାରି ମାଉକା ମୁଣ୍ଡିଆ ଉପରେ ଚଢ଼ିଗଲା । ପଛେ ପଛେ ବାଜା ଓ ନାଚ ଏକା ଦଉଡ଼ାକେ ପାହାଡ଼ ଉପରେ ଚଢ଼ି ସବା ଉପରେ ଯେଉଁ ବୁଢ଼ା ଖଜୁରି ଗଛଟି ଅଛି ଦୁଇ ହାତରେ ତାକୁ କୁଣ୍ଢେଇ ଧରି ଗୁରୁମାଈର ଚେତା ବୁଡ଼ିଗଲା । ପୂଜା ସରିଲା ।

ଦିଶାରି ବୁଢ଼ା ଖଜୁରିଗଛକୁ ଆଙ୍ଗୁଠି ଦେଖାଇ କହିଲା, ଉତ୍ତର ମିଳିଛି । ଅଜଠୁ ଏଠି ରହିଲା ଦାଦ-ବୁଢ଼ା । ପୂଜା ଦିଅ, ଆଉ ଭୁଲ ନାହିଁ ।

ତାଉଁ ତାଉଁ କରି ଗାଁର ସବୁ ବାଇଦ ବାଜ ଉଠିଲା । ସମସ୍ତେ ନାଚିଲେ । ଧାଂଡ଼ାମାନେ ପିଚି ମାରି ମାରି ନାଚିଲେ । ଧାଂଡ଼ୀମାନେ ଅଣ୍ଟା ଦୋହଲାଇ ନାଚିଲେ । ବୁଢ଼ାବୁଢୀ ସମସ୍ତେ ଥେଇ ଥେଇ ଧେଇ ଧେଇ ନାଚିଲେ । ଦେଉଣ' ଲୋକଙ୍କର ସରଳ ହୃଦୟର ଐକ୍ୟ ବିଶ୍ୱାସରେ ଖଜୁରିଗଛରେ ଦାଦବୁଢ଼ାର ସ୍ଥାପନା ହେଲା ।

ଦିଶାରି ମନ୍ତ୍ର ପଢ଼ିଲା, ପାଞ୍ଚି ଲେଉଟାଇଲା, ସୂର୍ଯ୍ୟଙ୍କଆଡ଼କୁ ଅନାଇଁ ରହିଲା ମନକୁ ମନ କ'ଣ ବକିହେଲା । ଭୂଇଁରେ ମୁ ରୁଜ ବିଞ୍ଚିଦେଇ ଗୋଟିଏ କଣରେ କାଠିଖଣ୍ଡେ ପୋତି ଗୁଇକୁ ଅନାଇ ରହିଲା, ଲଉ-ଭୁମ୍ବାରୁ ଲଣ୍ଡା ମଦ ଟୋପିଏ ପିଇଲା । ତାପର ହଠାତ୍ ଚିତ୍କାର କଲା ମାରି ମାରି, ଗଛର ମୁ ଣ୍ଡି ହାଣିଦଅ ନୋହିଲେ ଦାଦବୁଢ଼ା ଏଠୁ ପଳେଇ ଯିବ ।

ଦାଶ କୁରାଢ଼ି ପଡ଼ିଲା ଗଛ ଉପରେ । ଠିକ୍ ଶତାଏ ଉଚ୍ଚରେ ମୂଳରୁ ପୁରୁଷେ ଉଚ୍ଚ ଛାଡ଼ିଦେଇ । ଯେତିକ ରହିଲା ସେତିକ ହେଲା ଦାଦ-ବୁଢ଼ାର ପ୍ରତୀକ । ଥୁଣ୍ଟାର ମୂଳରୁ ମୁଣ୍ଡଯାକେ କୋଡ଼ିଏ କ ଏକୋଇଶ ସ୍ଥାନରେ ଟ୍ଟେଟ ଟ୍ଟେଟ ହୋଇ ହଣା ହୋଇ ସାତବେଣ୍ଟିଆ କରିହେଲା, କଟା ଘାରେ ଚୂନ ହଳଦୀ ପରି ହଣାକାଠର ଫାଙ୍କେ ଫାଙ୍କେ ଧଳା ନାଲ କଳା ରଙ୍ଗ ସବୁ ଗୁଳା ହେଲା, ମୁ ଣ୍ଡ ଉପରେ ଧୋବ କନା ଖଣ୍ଡେ ପଗଡ଼ି ହୋଇ ବନ୍ଧାହେଲା, ଦାଦବୁଢ଼ା ବଡ଼ ବଡ଼ ଆଖି କରି ତଳର ପଲ୍ଲୀକୁ ଅନେଇଁ ରହିଲା ଜଗୁଆଳ ମୁରବି ପରି ।

ଘରପାଖେ ପାହାଡ଼ର ଭଉଁରି, ମଝିରେ ଗମ୍ଭୀର ଖୋଲ ଓ ତାହା ଭିତରେ ଗହଳ ପଥର ପୂର୍ଣ୍ଣ ସତର ବାଙ୍କର ଦାଆ ଫାଳଆ ମୁଗନ ନଈ । ତାହାରି ମଝିରେ ନଈ କୂଳେ କୂଳେ ବଡ଼ ଡିପର ତାଲୁଏ ତାଲୁଏ ଗାଁର ବସ୍ତି, ଡିପ ଉପରେ ପାନ ମୁ ଣ୍ଡିଆଟି । ତାହାରି ତଳା ମୁଣ୍ଡ ଉପରେ ଖଜୁରି ଗଛର ଥୁଣ୍ଟା, ଦାଦବୁଢ଼ା ।

ଦାଦ ବୋଲନ୍ତେ କୋରାପୁଟର ଜଙ୍ଗଲୀଲୋକେ ବାପର ଭାଇକୁ ବୁଝନ୍ତି ନାହିଁ । ବୁଝନ୍ତି ବାପର ବାପ ଓ ତାର ବାପ । ଯେପରି ଶଶୁର

କହିଲେ ବୁଝନ୍ତି ଭରପାର ଭାଇ, ଆଉ ଦାଣ୍ଡ ସହିତ ବୁଢ଼ା ମିଶିଗଲେ ପରଜା ଓ କନ୍ଧ ଦୁଇ ଭାଷାଯାକ ମିଶିଯାଏ । କନ୍ଧ ଭାଷାରେ ବୁଢ଼ା ଅର୍ଥ ବାପର ବାପ ।

ଏପରି ଯେଉଁ ସାତବେଣିଆ ବାଙ୍କ ବୁଢ଼ା ସେ ମୁଣ୍ଡିଆ ଉପରେ ଠିଆ ହୋଇ ଦୂର ପାଖକୁ ଅନାଏଁ, ଜୁଳୁଜୁଳୁ କରି କାଠର ଆଖିରେ ଅନାଏଁ । ଅନାଇଁ ଅନାଇଁ ଦିନ ଯାଏ ରାତି ଆସେ, ପାହାଡ଼ର ଖୋଲରେ ଭର୍ତ୍ତି ହୋଇଯାଏ ବସ୍ତୁସ୍ତୁର ଅନ୍ଧାର ।

ଦାଢ଼-ବୁଢ଼ା ବଡ଼ ସୁଧାର ଠାକୁର । ଅତି ବିରକ୍ତ ନ ହେଲେ ସେ କୋପ ହୁଏ ନାହିଁ । ସେହି ପରା ଅନାଦି ପୂର୍ବପୁରୁଷ । ତାର ସୃଷ୍ଟି, ଏସବୁ ତାର ଖେଳ । ଯେ ଯାହା କହେ ଦାଢ଼-ବୁଢ଼ାର ତା, କାରଣ ତାର ପାଣ୍ଟି ଫିଟେ ନାହିଁ ।

ଡିପ ଉପରୁ ଗହ୍ୱାରର କ୍ଷେତ ବଡ଼ ସୁନ୍ଦର ଦିଶେ, ଧାଡ଼ ଧାଡ଼ ବାଡ଼ ଚେକା ଚେକା କ୍ଷେତ । ଗହମର ଗାଢ଼ ସବୁଜ, ମାଣ୍ଡିଆର ନେଳ କଳା, ଧାନର ଫିକା ନେଳ । କ୍ଷେତ ପାଖେ ପରିବା ବଗିଚ୍ଚା, ସବୁଜ ପଟିପଟିକା ଡାଳର ଛକାଛକ ବାଡ଼ । ଭିତରେ ମକ୍କାର ଲମ୍ବ ଦାଢ଼ି ପବନରେ ଫୁରୁ ଫୁରୁ ଉଡ଼ୁଛି । ଜହ୍ନି ଛଚିନ୍ଦ୍ରା କୁନ୍ଦୁରୁ ଦୋହଲି ଦୋହଲି ବଢ଼ୁଛି । ଦାଢ଼ବୁଢ଼ା ବାରିବଗିଚ୍ଚ ଜଗେ, ଦେଖେ ତାର ପୁଅ ନାତିମାନେ ଟାଂଗରା ମାଟିରୁ ଶାଉଁଳା ଫସଲ ଗୋଟେଉଛନ୍ତି । ପୁଣି ଦାଢ଼ି ବୁଢ଼ା ଟିକିଏ ଢୁଳେଇ ପଡ଼େ । କାଉପଲ ଗୋଟି ଗୋଟି କରି ମକ୍କା ଛୁଣ୍ଡେଇ ନିଅନ୍ତି । କ୍ଷେତରେ ଗୋରୁ ପଶେ ।

ସବୁ ଲୀଳା ଖେଳା ତାହାରି ବାଟ ଦେଇ ।

ଦିନ ଦି'ପହରେ ଗାଁର ଝିଏ ଲୁଗା ଫୋପାଡ଼ି ଦେଇ କୁଠରେ ପଶି ମୁଗନ ନଈରେ ପାଣି ଚବର ଚବର କରନ୍ତି । ବରଗଛ ମୂଳେ, ଗାଈଜଗା ଟୋକା ଗୋରୁଗୁଡ଼ ଦେଇ ବଇଁଶୀର ସ୍ୱର ମେଳାଏ । ସଞ୍ଜ ହେଲେ ପାହାଡ଼ର କନ୍ଧ ବକନ୍ଧରୁ ଗୋରୁ ମଇଁଷିର ଧାର ଲାଗିଯାଏ,

ଗଡ଼ାଣିଆ ଖାଲୁଆ ଗାଁକୁ । ଚଢ଼େଇ ପଲ ଚୋଟାର ପଥଭିତରେ କେଉଁଠି ମିଶି ଯାଆନ୍ତି । ହଳ ସରେ । ନୂଆଣିଆଁ ଘରକରୁ ଧୂଆଁ ଉଠେ । ଧାଂଡ଼ା-ବସା ଘରେ ଡୁଙ୍ଗୁ ଡୁଙ୍ଗା ବାଜେ । ନଶା ଅନ୍ଧାରରେ ଗୀତରେ ଗୀତରେ ଟୋକା ଟୋକୀଙ୍କର ଖେଳ ଲଗେ । ଦାଦିବୁଢ଼ା ନିସ୍ତଳ ହୋଇ ଠିଆହୋଇ ରହିଥାଏ, ଯେଉଁଠି ସେଇଠି ।

ପ୍ରତି ଶୁକ୍ରବାର ନଳଗାଁ ହାଟକୁ ଛତା ଛଡୋଢ଼ ଧରି ଏହି ଦାଦି-ବୁଢା ବାଟେ ମଣିଷର ସ୍ରୋତ ବୋହିଯାଏ । କଣାଳ ବକାଳ ବେଶୀ ନୁହନ୍ତି ଦେଖଣାହାରି ବେଶୀ । ହାଟ ତାଙ୍କର ପର୍ବ । ପଇସାକର ଧୂଆଁ ପଥ ନୋହିଲେ ଅଧଲକର ଲୁଣ କିଣିବା ବାହାନାରେ ସେମାନେ ଆଠଦଶ କୋଶ ବାଟ ହାଟକୁ ଯାଆନ୍ତି । ଗାଁର ଅଧେ ମିଶିପେ, ଗାଁର ସବୁ ମାଇପେ । ମୁଣ୍ଡରେ ଜଡ଼ାତେଲରେ ଜୁଡ଼ା ସଜାଡ଼ି ଧୋବଫୁଲ ପେନ୍ଥା ଖୋସି ନାଲି ଲୁଗା ପିନ୍ଧି ଯାଆନ୍ତି ପାହାଡ଼ ଡ଼ିଏ, ପାଦ ଝୁଣ୍ଟେ ନାହିଁ । ଗୋଡ଼ ଭୋଳ ହୁଏ ନାହିଁ, ହସିହସିକା ଗୀତ ବୋଲି ବୋଲି ଚାଲିଯାଆନ୍ତି, ପାହାଡ଼ର ଢାଲୁଏ ଢାଲୁଏ । ଯାଆନ୍ତି ପରଜା ଟୋକଏ, ଆଉ ଡମ ଟୋକମାନେ । ଖ୍ରୀଷ୍ଟାନମାନେ ଧୋବଲୁଗା ଆଉ ଖଣ୍ଡେ ଖଣ୍ଡେ ବ୍ଲାଉଜ, ନୋହିଲେ ହରରଙ୍ଗି ଲୁଗା, ତହିଁରେ ଫାଳେ ନାଲି ତ ଫାଳେ ହଳଦିଆ, ଫାଳେ ନେଳ । ଆଉ ଚାଲନ୍ତି 'ଗହବା' ଡ଼ିଏ, ଦେହରେ କେରଂ ଖୋଟରେ ହାତବୁଣା ନାଲି କଳା ପଟିପଟିକା କେରଂ ଲୁଗା, କାନରେ ଗୋଲ ଗୋଲ ପିତଳ ତାରମୋଡ଼ା ଅଳଙ୍କାର, କାନ୍ଧକୁ ବୋହି ପଡ଼ିଥାଏ, ଗୋଲ ବଜୁଳ ପରି, ମୁଣ୍ଡବାଳରେ ନାଲି ପଟି, ସବୁ ଏକା ମସ୍ତକେ । ସେପାଖର ପାହାଡ଼ ଚଢ଼ୁ ଚଢ଼ୁ ବେଳେ ବେଳେ ମଣିଷର ଧାରି ଅଟକ ରହିଯାଏ । ଦାଦିବୁଢ଼ା ଆଡ଼କୁ ଆଙ୍ଗୁଠି ଦେଖେଇ ଲୋକେ କହନ୍ତି ହେଇ ଦାଦିବୁଢ଼ା । କେବେ କଦବା ଫୁଲଟାଏ ଫଳଟାଏ ଦାଦିବୁଢ଼ାର ଗୋଡ଼ତଳେ କଏ ଆଣି ରଖିଦିଏ । ଦଣ୍ଡବତ ମିଳେ ପ୍ରଚୁର । ଦାଦିବୁଢ଼ା ଚାହିଁ ଚାହିଁ ଦେଖେ, ହାତଗୋଡ଼ ହଲ ମଣିଷର କାର୍ଯ୍ୟ ଆଉ ତାର ଭଙ୍ଗି । ଭୂଇପଡ଼ି ଦେଖେ, କିଛି କହେ ନାହିଁ । କାରଣ ତାର ପାଟି ନାହିଁ, ସେ ଠାକୁର ।

ଏହିପରି ଦିନର ଝାଞ୍ଜି ତଳେ ତନ୍ଦ୍ରାମଗ୍ନରେ ପାଗ ଭିଡ଼ ଦାଦିବୁଢ଼ା ବୈଶାଖର ଝୋଲାମରା ଖରା ସହେ। ସହେ ଜ୍ୟେଷ୍ଠର ଅବିରାମ ଧାରା, ଯେତେବେଳେ କ୍ଷେତର କୃଷୀ ଗୀତ ଧରେ

ଜେଠୁ ହାଣୁ ମାରୁଳ
ବର୍ଷା ଦୁଳ ଆସୁଳ

କାର୍ତ୍ତିକର ଶୀତର ପବନ ମଞ୍ଜେ ମଞ୍ଜେ ସହେ ଆଉ ନବାକ୍ ଅବିଚଳିତ ହୋଇ ଠିଆ ହୋଇ ରହେ, ଉପରର ଚାରିପଟା ଆକାଶ ପରି। ତାର ଦୁଃଖ ନାହିଁ, କଷ୍ଟ ନାହିଁ, ଅନୁଭୂତି ନାହିଁ, ହୃଦୟ ନାହିଁ। କାରଣ ସେ ଦେବତା, ଠାକୁର, ତାର ଖାଲି ଅଛି ଚାହିଁ ଚାହିଁ ଦେଖିବା, ଦେଖି ଦେଖି ଠିଆହେବା।

ଦିନାକେତେ ପରେ ଦାଦବୁଢ଼ାର ଠିକ୍ କଡକୁ ଲାଗି ଠିଆ ହେଲା ଗୋଟାଏ ବରଗଛ ଉଇ ହୁଙ୍କା। ଦିନୁଦିନ ସେ ଏପରି ଭାବେ ବଢ଼ି ଉଠିଲା ଯେପରି ଦାଦବୁଢ଼ାକୁ ମଧ୍ୟ ଜିଣିଯିବ। ଗାଁର ଲୋକେ ହୁଙ୍କାକୁ ଆସି ଭାଙ୍ଗି ଦେଲେ ନାହିଁ, କାରଣ ଦଶାରି ପାଞ୍ଜି ଓଲଟାଇ କହିଲା ଯେ ଆପଣାର ସାଥୀ ହେବାପାଇଁ ଦାଦବୁଢ଼ା କେଉଁ ଏକ ଠାକୁର ଉମାକୁ ଆପଣା ପାଖକୁ ଡାକ ଆଣିଛି। ତହୁଁ ଚୂଆଁ ଚୂଇଁ ପରି ଦାଦବୁଢ଼ା ଆଉ ଉଇହୁଙ୍କା ଏକାଠି ଠିଆ ହୋଇ ରହି ଗାଁର ଏମୁଣ୍ଡ ସେମୁଣ୍ଡ ପର୍ଯ୍ୟନ୍ତ ଶୁଭ ଦୃଷ୍ଟି ଚାହିଁଲେ। ଦାଦବୁଢ଼ା ପାଖେ ମାନସିକ କରିବା ବେଳେ ହୁଙ୍କାବୁଢ଼ାଠୁ ଛଡ଼ାଇ ବଭୂତ ଅନେକେ ଖାଇଲେ। ଯାହାର ଛୁଆ ହେଉ ନାହିଁ, ଯାହାର ଭାତ ହଜମ ହେଉ ନାହିଁ, ଯାହାର ରୋଗ ଭଲ ହେଉନାହିଁ, ସେମାନେ ଏବଂ ଏହିପରି ନିତିଦିନର ଘରକରଣା ଗଡ଼ି ଚାଲିଲା।

—୩—

ରାମ ନାଇକର ପୁଅ ଠେଙ୍ଗା ଜାନ ବାପର ଗୋଟିଏ ପୁଅ। କେହି କେବେ ସନ୍ଦେହ କରି ନାହିଁ ଯେ ବାପ ଅନ୍ତେ ସେ ଗାଁର ନାଇକ

ହେବ । ରଜାଘର ତାକୁ ମୁଣ୍ଡରେ ପାଗ ଦେବେ, ଅଂଗୀରେ ଲଗାଇବାକୁ ଯୋଡ଼ାଏ ବୋତାମ ଦେବେ, ଗୋଟିକ ଉପରେ ରାଜାଙ୍କ ଛବି, ଆରଟିରେ ନାତିରଜାଙ୍କର । ଅମିନ୍ ଶିବନ୍ଦୀ ପ୍ରସନ୍ନ ଥିଲେ ତାର ନାଇକ କାର୍ଯ୍ୟ କେହି ଅଟକାଇବେ ନାହିଁ ।

ତେଣୁ ତାର ବଡ଼ ଖାତିର ।

ଠେଂଗା ଜାନି ଦିନବେଳେ ବାପର ଗୃହ ଦେଖେ । ସଞ୍ଜ ହେଲେ ଧାଏଁ ବସାଘରକୁ । ଗୁଲଯାଏ ଯେଉଁଠି ଗାଁର ଆଉ ବଦଶ ଅଭିଆଡ଼ା ଟୋକା ରାତିରେ ଶୁଅନ୍ତି । ଦାଣ୍ଡ ଏପାଖ ଧାଂଡ଼ା ବସାଘର । ଦାଣ୍ଡ ସେପାଖେ ଧାଂଡ଼ୀ ବସାଘର । ସେଠି ରାତିରେ ଧାଂଡ଼ୀମାନେ ଶୁଅନ୍ତି ।

ଧାଂଡ଼ା ବସା ଘରେ ରାତିହେଲେ ଟୋକାମାନେ ଡୁଂଗୁଡୁଂଗା ଯନ୍ତ୍ରଧରି ଗୀତ ବୋଲନ୍ତି । ଏଜେନ୍ସିର ସର୍ବସ୍ୱ ଏ ଡୁଂଗୁଡୁଂଗା । ଗୋଟିଏ ଲାଉ ଖୋଳ ଉପରେ ଗୁଲ ଭିଡ଼ାହୋଇଛି ତହିଁକୁ ଗୋଟିଏ ଲମ୍ବା କାଠର ଡେମ୍ଫ, ଡେମ୍ଫ ଉପରେ ଗୋଟିଏ ତାର ଟାଣ ହୋଇ ଏମୁଣ୍ଡ ସେମୁଣ୍ଡ ଯାଇଛି, ଲାଉ ଉପରେ ଖଣ୍ଡେ ଖପର ଉପରେ ତାରର ଭର । ତାହାର ବାଦରେ ଟଂ ଟଂ କଲେ ଡୁଂ ଡୁଂ ଶବ୍ଦ ହୁଏ । ଗୋଟିଏ ହାତରେ ଡୁଂ ଡୁଂ କରି ଆର ହାତର ମୁଦପିନ୍ଧା ଆଙ୍ଗୁଠିରେ ଲାଉ ପିଠିରେ ଠକ୍ ଠକ୍ କରି ତାଳ ରଖା ହୁଏ ।

ସଞ୍ଜହେଲେ ଠେଂଗା ଜାନି ଡୁଂଗୁଡୁଂଗା ବଜାଇ ମଣାର ଘାଉଁ ଘାଉଁକୁ ମଧ୍ୟ ଜିତିଯାଏ । ତାପରେ ଗୀତ ଧରେ—

ସେପାଖୁ ହରିଜାନିର ଝିଅ ସାରିଆଦାନ୍ କଥା ଗୁନ୍ଧି ଗୁନ୍ଧି ଗୀତର ଉତ୍ତର ଦିଏ—

ଗୀତକୁ ଗୀତ ଲଢ଼େଇ ଲାଗେ । ତା'ର ସାଙ୍ଗ ପୁରୁଣାମାଣ୍ଡିଆ ବା ପୋଡ଼ବାନ୍ଧୁ ତା ସଙ୍ଗେ ସ୍ୱର ମିଶେଇ ଦେଇ ଗୀତ ଗାଆନ୍ତି । ସେପାଖୁ ସବୁ ଧାଂଡ଼ୀ ମିଶି ଯାଆନ୍ତି । ସବୁ ପ୍ରୀତିର ଢେଉ ଜଙ୍ଗଲେ ଜଙ୍ଗଲେ ଖେଳି ବୁଲେ ।

ଖ୍ରମ ନାଇକ ପକ୍ଷରେ ଏକପ୍ରୋକୁ; ହଇହୋ ପ୍ରାଚୀନ୍, ଠେଙ୍ଗା ଲମଟେ ସାରଆଦାନ୍କୁ ମାରିଲେ କଣ ମନ୍ଦ ହୁଅନ୍ତା ?

ପ୍ରାଚୀନ୍ କହେ, ଭଲ ହନ୍ତା ନାଇକ, ଭଲ ହନ୍ତା । ଗାଁରେ ଚତେ ଗୁଡ଼ଦେଲେ ଜାଣ ସାଙ୍ଗରେ ସମାନ ହେବାକୁ କଏ ଅଛୁ ? ନାଇକ, କ ତା'ର ସାଙ୍ଗରେ ବୁଲିବା ଲୋକ ଜାଣ ।

ନାଇକ କହେ, ଥାଉ, ଠେଙ୍ଗାଟି ମୋର ପିଲ । ଆଉ କଛୁ ଦନ ଯାଉ । ଆପଣା ଆପେ ଠିକ୍ କରୁ ସେ ।

ଗାଁର ସବୁ ଝିଅ ଠେଙ୍ଗାଜାଣକୁ ଆକ୍ରମଣ କରନ୍ତ । ନାଇକର ବୋହୂ ହେବାକୁ କଏ ବା ନ ଚାହେଁ ? ଠେଙ୍ଗାଜାଣ ଗୀତ ଗାଇଲେ ବେଳେ ବେଳେ ସେପାଖୁ ଉପରେ ପଡ଼ ଚମ୍ପାବଣ କ ସୁଆଁ ଫୁଲ କ ଆଉ କେହ୍ବ ଗୀତର ଜବାବ୍ ଗାଇ ଦଅନ୍ତ । ସାରଆଦାନ୍କୁ ଧର ହସି ହସି ଗଡ଼-ଯାଆନ୍ତ । ଥଣ୍ଡାରେ ଥଣ୍ଡାରେ ଏଠୁ ସେଠୁ ଫୋପଡ଼ା କଟଡ଼ା କେତେ ଗୀତର ତେଜ ଆସି ଠେଙ୍ଗା ଧ୍ୟାରେ ବାଜେ, ତହିଁରେ ସେ ଟଳମଳ ହୋଇଯାଏ, ଆପଣାକୁ ସମ୍ଭାଳ ରଖି ପାରେ ନାହିଁ । ନଗୁଟିଆ ବେଳେ, ଗାଁ ଭୁଠବାଟେ କ୍ଷେତକୁ ଭାଙ୍ଗିଯିବା ବେଳେ ଠେଙ୍ଗାଜାଣ ବେଳେ ବେଳେ ଅଟକ ରହ ଭାବେ, କାହାକୁ ସେ ପସନ୍ଦ କରବ ? କାହାର ମାୟା ସେ ଏଡ଼ ପାରେ ନାହିଁ, ପୁଣି କାହାରକୁ ଆଉ ଦଶ ଜଣଙ୍କ ଭିତରୁ ସେ ଅଲଗା କର ପାରେ ନାହିଁ ।

ଜହ୍ନ ରାତରେ ଗାଁ ଦାଣ୍ଡରେ ଯେତେବେଳେ କାଠ ଗଣ୍ଡିର ନିଆଁରେ ନାଚ ହୁଏ, ସବୁ ଝିଅ ବାହାକୁ ବାହା ଛନ୍ଦାଛନ୍ଦ, ଠେଙ୍ଗାଜାଣ ଆଉ ତନ ଜଣଙ୍କ ସଙ୍ଗେ ବାହା ଛନ୍ଦ ଠିଆହୁଏ । ତଳ ଗ୍ଥର ଜଣ ଧାଂଡ଼ାଙ୍କ କାନ୍ଧ ଉପରେ ଠିଆହୋଇ ଆଉ ଚାରଜଣ ଭେଣ୍ଡିଆ ବାହାକୁ ବାହା ଛନ୍ଦ ଦଅନ୍ତ ଓ ଏହିପର ଅବସ୍ଥାରେ ଆଠଜଣଯାକ ନାଚନ୍ତ । ତଳ ଲୋକଙ୍କର ବାହା ଫାଙ୍କ ଭିତରେ ଛନ୍ଦାଛନ୍ଦ ଧାଂଡ଼ୀର ସୁଅ ସାପେଇ ସାପେଇ ନାଚନାଚକା ଗଳ ବୁଲିଯାଏ, ବାଇଦର ତାଳେ ତାଳେ । ଗାଁର କଏ କେତେ ଧାଂଡ଼ୀ ନାଚଗଲାବେଳେ ଠେଙ୍ଗାଜାଣର ଦେହ ବାଟେ ଟିକଏ ଟିକଏ ମଠେଇ ଯାଆନ୍ତ । କଏ ବା ବେଳେ ବେଳେ ପିଟି ହୋଇଯାଏ ।

ଠେଙ୍ଗାଜାଣର ମନେ ହୁଏ ନାଚ ଫାଚ ଗ୍ରନ୍ଥି କାହାକୁ କାହାକୁ ସାଙ୍ଗରେ ନେଇ ଗ୍ଲାଯାଆନ୍ତା ଦାଦବୁଢ଼ା କୁଦ ଉପରକୁ । ତା'ର ବୟସ ଅଳ୍ପ । ଭାବନା ଭିତରେ ସ୍ୱପ୍ନ ଆସି ପହୁଞ୍ଚେ । ସେ କଣ୍ଡୁ କରିପାରେ ନାହିଁ, କେବଳ ଗୋଟିକୁ ଭାବିଲେ ଅରକର ଗୁଇ ମନକୁ ଘାଣ୍ଟେ । ଠେଙ୍ଗାଜାନ ଦୋଦୋପାଞ୍ଚ କରେ ।

ହଳଦୀ ଗରଗର ଚକ୍‌କଣଗ୍ଲକଣ ଗରିଗରିକା ମୁହଁ ହାତ, ଅଳ୍ପ ଖରରେ ଝାଳେଇ ପଡ଼େ; ଚରଳା ଲହୁଣୀ ପରି । ସୁନ୍ଦର ଗହୀର ଆଖିର ଚାହାଣୀ । ଚକ୍‌କଣ ଜୁଡ଼ା । ଗଭରେ ସରୁ ଫୁଲର ଦେନ୍ଥା । ଦେହରେ ସକାଳର ନାଲି ସୂର୍ଯ୍ୟର ରଙ୍ଗରେ ଛଣା ହେଲାପରି ଲାଲ୍ ଲୁଗା ଟାଣ କରି ଭିଡ଼ା ହୋଇଛି । ସ୍ୱାସ୍ଥ୍ୟ ଆଉ ଯୌବନର ପ୍ରାଚୁର୍ଯ୍ୟ । ହରିଣୀ ପରି ଗତି, କ୍ଷିପ୍ର, ଉଲ୍ଲସିତ, ସୁଠାମ ସୁନ୍ଦର ଧାଂଙ୍ଗୀ ।

ଠେଙ୍ଗାଜାନର ଆଖିଆଗେ ଭାସି ଯାଆନ୍ତି ଧାଂଙ୍ଗୀ ଦଳ । ହଳଦିଆ ଅଳସି କ୍ଷେତ ଉପରେ, ନେଳ ସାବୁଜା ମାଣ୍ଡିଆ କ୍ଷେତ ଉପରେ ଧୋବଲା ହସର ମାୟା କୁହୁଡ଼ି ଭସେଇ ଦେଇ । ତା'ର ଦେହ ଟାଙ୍କି ଉଠେ । ମନ ଧୂଆଁ ଳଆ ହୋଇଯାଏ । ମରମର ଗହନ ଅନୁଭୂତ ଭିତରେ ଖୁନ୍ଦାଖୋନ୍ଦ ହୋଇ ଘଣେ କଣ୍ଟା ଆଉ ଫୁଲ । ଦାଦବୁଢ଼ା ମାୟା କାଟି ହୋଇଛି କାଠର ସାତବେଣ୍ଠିଆ ଖୁଣ୍ଟା, ତାକୁ ବାଧେ ନାହିଁ । ହରଷ ହୁଏ ନାହିଁ । ଦରୁଖ ଆସେ ନାହିଁ । ଠେଙ୍ଗା ଜାନ ବଢ଼ି ହୁଏ । ମନ କୁହୁଳେ । ଦେହ ଜଳେ । କିନ୍ତୁ ସବୁ ବୁଝିଲେ ସୁଦ୍ଧା ସବୁଥିରୁ କାଟି ଗୋଟାଏ କଣ୍ଡୁ ଏକୁଟିଆ ହୋଇ ଗୋପନରେ ତା'ର ମନକୁ ଗୁଇ ପାରେ ନାହିଁ । ତେଣୁ ସେ ହସେ, ଖେଳେ, କୁଦାମାରେ, କିନ୍ତୁ ଶେଷ ବେଳକୁ ବାଟ ପାଖେ ଅଟକିଯାଏ, ଆଗେଇ ପାରେ ନାହିଁ ।

ଝିଅମାନେ ତାକୁ ଥଟ୍ଟା କରନ୍ତି । ଥଟ୍ଟା କରିବାକୁ ଭଲ ପାଆନ୍ତି, କାରଣ ଟୋକାଟୋକୀ ସମ୍ବନ୍ଧ ଭିତରେ ବେଶୀ ବାଟ ସେ ଆଗେଇ ପାରିନାହିଁ, ଅଥଚ ବଳିଷ୍ଠ ତା'ର ଗଢ଼ଣ, ଲଳିତ ତା'ର ରୂପ, ଆଉ ଆଖି ଯୋଡ଼ିକ, ସତେ ଯେପରି ବଇଦା ମେଳରେ ଭାସି ଭାସି ହସି ହସି ସେ

ଯାଇଛୁ, ଆଜ ଉପୁଜାଉଛୁ କେବଳ ସ୍ୱପ୍ନର ମାୟା କୁହୁକ, ଯାହାକୁ ସେ ଶାନ୍ତ କରିବାକୁ କେବେ ଚେଷ୍ଟା କରିନାହିଁ । ତେଣୁ ସେ ଅଜେୟ । ତେଣୁ ସ୍ତ୍ରୀ ପୁରୁଷର ସମ୍ବନ୍ଧମୂଳକ ଦ୍ୟୋତନା ଅନୁଯାୟୀ ତାକୁ ହିଁ ଆକ୍ରମଣ କରିବାକୁ ହେବ, ଭାଙ୍ଗି ଦେବାକୁ ପଡ଼ିବ, ଆଘାତ କରିବାକୁ ପଡ଼ିବ, ଯେ ପର୍ଯ୍ୟନ୍ତ ସେ ଭାଙ୍ଗି ନ ଯାଇଛି ।

ଠେଙ୍ଗାଜାନ ଦାଦି ଅଜାକାଳର ଗୀତ ବୋଲି ଧାଂଡ଼ୀ ବସାଘରୁ ଭାସି ଆସୁଥିବା ରଣଦୁନ୍ଦୁଭିର ଉତ୍ତର ଦିଏ—

"ସାରଆଗାରୁ କାତକ ଡୁଗୁଣ୍ଡିଗାରୁ ହଣ୍ଡା,
ଆଇଲୁସ୍‌ରେ ଟୋକା ଦୁଇ କେତେ ଖସି ଡିଣ୍ଡା ।"

ଯୁଦ୍ଧ-ଦୁନ୍ଦୁଭି ବଜାଇ ଡାକେ, ଆସ ଦେଖିବା କେତେ ତୁମର ଯୌବନର ବଳ । ଧାଂଡ଼ୀ ବସାଘରେ ବନ୍ଧୁମାନେ ପିଠି ଝୁଲୁଡ଼ାଇ 'ବାହା ବାହା' କରନ୍ତି । ତେଣୁ ଗୀତର ଉତ୍ତର ମିଳେ । ପୁଣି ଖଟ ଅଧରେ ଛଟପଟ ହୋଇ ଦେହ ହାତ କଚୁଡ଼ି କଚୁଡ଼ି ଠେଙ୍ଗାଜାନ ଶୋଇ ଦାଣ୍ଡ ଆର ପାର ମିବାକୁ ଗୋଡ଼ ଉଠେ ନାହିଁ ।

ମୁଣ୍ଡିଆ ଉପରେ ପଗଡ଼ି ପିନ୍ଧା ଖଜୁରିଗଛର ଦାଢି-ବୁଢ଼ା ମଣିଷର ମରମ କଥା କେତେକେ ବୁଝେ, ଏକା ସେହି ଜାଣେ ···················

ସେଦିନ ଗାଁ ଦାଣ୍ଡରେ ସଜ ତୋଳା ମକ୍କା ପୁଞ୍ଜିଏ ନେଇ ସାରଆଦାନ୍ ଯାଉଥିଲା, ହଞ୍ଜାବୁଡେ । ଗାଈ ପଲକ ଅଡେଇ ଅଡେଇ ସେଆଡୁ ଠେଙ୍ଗାଜାନ ଆସୁଥିଲା । ହାବୁଡ଼ିଲେ । ଠେଙ୍ଗାଜାନ ହସି ହସି କହିଲା, "କଲୋ, ଦବୁକ ଗୋଟେ" ?

ସାରଆଦାନ୍ ହସି ହସି ଗୋଟିଏ ମକ୍କା ହାତରେ ବଢ଼ାଇ ଧରିଲା । ଠେଙ୍ଗା ଝୁଇଁକରି ତା'ର ହାତକୁ ଟାଣ ମୁଠାରେ ଧରି ପକାଇ ଆସ୍ତେ ଝାଙ୍କିଦେଲା । ପୁଣି ହଠାତ୍ ଛାଡ଼ିଦେଇ ହୋ ହୋ ହୋଇ ହସି ସେଠୁ ଚାଲିଗଲା । ମକ୍କା ଆଉ ଦିଆ ହେଲା ନାହିଁ ।

ପୁଣି ଆଉ ଦିନେ ସମସ୍ତ ପରଜାର ଝିଅ କମ୍ବଳ ଝରଣା ଅଡ଼ଡ଼ା ବାଟେ ପାଣି ମାଠିଆଏ ଧରି ଉଠୁଥିଲା । ଖରାବେଳ । ଠେଙ୍ଗା କାନ୍ଧରେ ବାଡ଼ି ଖଣ୍ଡକରେ ଦୁଇ ତିନଟା ଲଉ ତୁମ୍ବା ଓହଳେଇ କ୍ଷେତକୁ ବାହାରିଥିଲା । କମ୍ବଳର ଗୋଡ଼ ଖସିଗଲା । ସେ ଏପରି ଭାବେ ବସି ପଡ଼ିଲା ଯେପରି ମାଠିଆ ଭାଙ୍ଗିଲା ନାହିଁ, ଖାଲି ପାଣି ଢାଳିଗଲା । ଆଉ ତା'ର ଗୋଡ଼ ମକଚି ହୋଇଗଲା । ଠେଙ୍ଗା ପାଖକୁ ଚାଲିଗଲା ବେଳକୁ କମ୍ବଳ ଓଃ ଆଃ ହଉଛି । ମାଠିଆଟି ତଳେ ଗଡ଼ୁଛି । କାନ୍ଧର ବାଡ଼ି ବାହୁଙ୍ଗି ଓହ୍ଲେଇ ଦେଇ କମ୍ବଳକୁ ଟେକି ଧରିଲା । କମ୍ବଳ ଆହା ଆହା ହୋଇ ଭିଡ଼ମୋଡ଼ ହୋଇ ଏପାଖ ସେପାଖ ଲଟେଇ ପଟେଇ ହେଉଥାଏ । ଗାଡ଼ ଭିତରେ, କେହି କୁଆଡ଼େ ନାହିଁ । ଉଢ଼ୁଆଳ । ଗଛତଳ ଛାଇ । ଏପାଖ ସେପାଖ ଗାଡ଼ର ଅଡ଼ଡ଼, ତାରି ଭିତରେ ସେପାଖ କ୍ଷେତକୁ ବାଟ । ଗାଡ଼ ସନ୍ଧିରେ ଗୋଟିକିଆ କାଣ୍ଡାଟିଏ ବୋବଉଥାଏ । ନିସ୍ତଳ । ଠେଙ୍ଗାଜାନ ମୁହୂର୍ତ୍ତେ କମ୍ବଳର ବିକଳ ମୁହଁକୁ ଅନେଇଲା । ଆଖିର ଗମ୍ଭୀର କଲିଲା । ମୁହଁ ନୁଆଁଇ ଆଣିଲା । ତାପରେ କମ୍ବଳକୁ ସଜାଡ଼ି ଦେଇ ବାଟେ ବାଟେ ଚାଲିଗଲା ।

ଉତ୍ତେଜନା ଲୁଚେଇବାକୁ ଦୁଲଦାଲ୍ ଗୋଡ ପକାଇ ସେ ଚାଲିଗଲା । ପିଲାଟିଦିନୁ ଗାଁର ଝିଅଙ୍କୁ ଦେଖିଛି । କେତେ ଝିଅ ତାରି ଆଗେ ନଙ୍ଗଳା । ପିଲାଦିନୁ ତାଙ୍କରି ସାଙ୍ଗେ ବଢ଼ି ଆସିଛି । ଏବେ ଦେଖିଲେ ହଠାତ୍ ଚମକ ଲାଗେ । ମନ ଭିତରେ ସାତ ପାଞ୍ଚ କରେ । ପୁଣି ସିଧା ହୋଇ ଚାଲିଯାଏ ।

ଦାଦିବୁଢ଼ା ମୁଣ୍ଡିଆ ଉପରେ ଠିଆ ହେଇ ରହେ ।

ରାମ ନାଇକ ନନ୍ତ ଆସି ତା ଗୋଡତଳେ ମୁଣ୍ଡିଆଟିଏ ମାରି ଜଣାଣ କରେ, ଦାଦବୁଢ଼ା, ମୋର ଠେଙ୍ଗା ନାଁକି ଗୋଟିଏ ଭଲ ବୋହୂ ଦେବୁ । ଦେଖିବାକୁ ଭଲ ହୋଇଥିବ, କ୍ଷେତପାଇଟିକୁ ମଜଭୁତ ଥିବ । ପିଲା ଜନମ କରିବ ଅନର୍ଯ୍ୟାପ୍ । ଆଉ ଆମ ବୁଢ଼ାବୁଢ଼ୀଙ୍କୁ ପଚାରିବ । ନଗୁଟିଆ ସଞ୍ଜରେ ଯେତେବେଳେ ଦାଦବୁଢ଼ା ଆଉ ହୁଂକାବୁଢ଼ା ତଳେ ତଳେ ଅନ୍ଧାର ଖୁନ୍ଦ ହୋଇଯାଏ, ତଳୁ ଧାଂଡାବସାଘରୁ ଢୁଂଢୁ

ଡ଼ୁଂଗାର ଯମକ ଅନୁପ୍ରାସ ଉପରକୁ ମଶା ଘାଉଁ ଘାଉଁ ପରି ଶୁଭେ । ଗ୍ରାମ ନାଇକ ବାରମ୍ବାର ଦଣ୍ଡବତ ହୋଇ ଖଜୁରି ଅଁଣ୍ଠାରେ ଦାଦବୁଡ଼ା ପାଖେ ଗୁହାରି କରେ, ଅଳି କରେ । ନଜର ପାଟି ନଜେ ଶୁଣେ—ଦାଦବୁଡ଼ା, ଗଲବର୍ଷ ଯେମିତ ପାଞ୍ଚମୁଣ୍ଡ ଗୋରୁ ମୋର ମଲେ, ଏବର୍ଷ ଯେପରି ନ ହୁଏ ଦାଦବୁଡ଼ା । ତୋତେ ପାଗ ଦେବି, କୁକୁଡ଼ା ଦେବି, ମଦ ଦେବି, ସେମିତ କରିବୁ ନାହିଁ ଦାଦବୁଡ଼ା, ମରିଯିବଟି ।

ବେଳେ ବେଳେ ହରିଜାନ ଆସେ, କହେ, ଦାଦବୁଡ଼ା, ମୋର ସାରିଆଦାନ୍ ପାଇଁ ଗ୍ରାମ ନାଇକର ପୁଅ ଠେଙ୍ଗାକୁ ଭୁ କରିଦେ, ଛତେ ଗୋଟେ ହଡ଼ା ପଛେ ପୂଜକରି ଦେବି, ଆଜି ଟିଣେ ଉଛା ମଦ ।

ଦାଦବୁଡ଼ା ପାଖେ ପୂଜା ହୁଏ ଅନର୍ଯ୍ୟାପ । ହୁଙ୍କାବୁଡ଼ା ବଢ଼େ ।

ବେଳେ ବେଳେ ଦ'ପହର ବେଳେ ମାଳେ ଲେଖା ଫୁଲ୍ ଯେନ ଗାଁର ଝିଏ ଆସନ୍ତି । ଦାଦବୁଡ଼ା ଗୁଣ୍ଡିପାଖେ ହାତ ଧରାଧରି ହୋଇ ଭଉଁରି ବୁଲି ନାଚ କରନ୍ତି, ଗୀତ ବୋଲନ୍ତି—

ଆମ୍ବୁଗାଣ୍ଡୁ ଜାମୁଗାଣ୍ଡୁ ବଢୁ ରେ
ଖାଉମାସା ମାଉମାଳା ଗୀତୁ ରେ ।

ଦାଦବୁଡ଼ା ପାଖକୁ ମୁହଁକୁ ଲଗେଇ ଆଣି ଚୁପଚୁପ୍ କାହା ନାଁ କହି ଫୁଲମାଳ ସବୁ ତାହା ବେକରେ ଲମ୍ବାଇ ଦଅନ୍ତି । ହସି ହସି ଚୁମୁଟା ଚୁମୁଟି ଠେଲାଠେଲି ହୋଇ ଦଳ ଭାଙ୍ଗି ଦଉଡ଼ ଦଉଡ଼ ପଳାନ୍ତି ।

ଦାଦବୁଡ଼ା ପାଖେ ମାନସିକ କରି କେହି ହତାଶ ହୁଏ ନାହିଁ । ସମସ୍ତେ ଆଶାକରି ବସନ୍ତି । ଦନେ ନା ଦନେ ନଷ୍ଟପ୍ରୁ ହେଲେ ଆଶା ଫଳବ । ଦାଦବୁଡ଼ା ଫାଙ୍କି ଦେବ ନାହିଁ ।

ଦାଦବୁଡ଼ା ପାଖେ ଅନେକ କୁକୁଡ଼ା ବଳି ପଡ଼ନ୍ତି, ଅନେକ ମଦ ଢଳାହୁଏ । ଅନେକ ଫୁଲ ଶୁଖେ ।

ଅଧରାତରେ ଡଙ୍ଗରିଆ ଜଣ ଲୋକ ସେଠିକି ଆସନ୍ତି । ମୁହଁରେ କହଳ ନଶ ଦାଢ଼ି । କାଳିଆ ଦେହରେ ଚକ୍ ଚକ୍ ଜଡ଼ାତେଲ ।

ଖଣ୍ଡେ ଲେଖାଁ କଳା କଉପୁଗା ପିନ୍ଧ । ସେମାନେ ଡମ୍ ଲେକେ, କେଉଁ ଲେକେ, ଯାହାଙ୍କୁ ଖୋଜିବା ପାଇଁ ପୁଲିସ ଜମାନ୍ ଜଙ୍ଗଲେ ଜଙ୍ଗଲେ ବୁଲୁଥାଏ ।

ସେମାନେ ମଧ୍ୟ ଦାଦବୁଢ଼ା ପାଖେ ମାନସିକ କରନ୍ତି— ଦାଦବୁଢ଼ା ! ପୁଲିସ ଜମାନ୍ ଯେମିତ ଆଜ ଗାଁ ଚନ୍ଖିକୁ ନ ଆସେ । ଦାଦବୁଢ଼ା, ସଭ୍ଭ ଇନସ୍ପେକ୍ଟି ବାବୁ ଯେମିତ ଜରକାଇଲରେ ପଡ଼ୁ । ଦାଦବୁଢ଼ା, ବାଘ ଭାଲୁକୁ ନ ଡର ଆମେ ଆଜ ରାତ ରାତ ପାଇଟିକୁ ଗ୍ଲଲୁ । ଧର୍‌ ଯେମିତ ଆମେ ନ ପଡ଼ୁ । ଆସ୍ତି ଯେମିତ କଟ୍ଟୁ ମିଳୁ, ଭୁଗ୍ଭ ହାତରେ ନ ଫେରୁ । ଆମର ଭଲ୍ ଅସାର୍ ଜାଣିବାକେ ଏକା ତୁଇ, ତୋକେ ନ କହ୍ଲେ କେ ଆମର୍ କଥା ଶୁଣିବ ?

ଲମ୍ୱ ହୋଇ ଗୋଡ଼ତଳେ ପଡ଼ ସେମାନେ ଅନ୍ଧାର ଭିତରେ ମିଶିଯାଆନ୍ତି ହୃଦୟରେ ନୂଆ ଆଶା ଓ ସାହସ ବାନ୍ଧ ।

ନଈ ଘାଟରେ ତା'ର ବନ୍ଧୁ ସାଣଆଫୁଲ୍‌ର ବେକରୁ ମଳି ଛଡ଼ୋଇ ଛଡ଼ୋଇ ସାଣଆଦାନ୍ ଅତ ଗୋପନରେ ତା'ର କାନ ପାଖେ କହ୍ଲ, ଆଜ ବାପା କହୁଥିଲ ମା'କୁ ଯେ ନାଇକ ଯଦ ତା'ର ପୋ ବଷ୍ୟରେ ମତେ ମାଗି ଆସିବ, ଦ'କୋଡ଼ ଟଙ୍କା ଝୋଲ୍ ଦେଲେ ସୁଦ୍ଧା ବାପା ନାହିଁ କରବ ନାହିଁ କୁଆଡ଼େ ।

ହସି ହସି ପାଣିରେ ମୁହଁ ମାଡ଼ଦେଲ ସାଣଆଦାନ୍ ।

ସାଣଆଫୁଲ କହ୍ଲ, ମୋର ବାଡା ସେମିତ ଏକା କହୁଥିଲ ମୋର ମାମୁଁକୁ ମୋ ବଷ୍ୟରେ କାଲ, କହ୍ଲ ନାଇକକୁ ଯାଇ କହ ।

ହସ ଭିତରେ ବଆଁ ଜାଳ ଏ ତା ମୁହଁକୁ ସେ ତା ମୁହଁକୁ ଟିକଏ ଗ୍ଳହିଁଲେ । ତା'ପରେ ଉଭୟେ ଆକାଶକୁ ଅନାଇ କହ୍ଲେ—ଏ ଲେ ଦ'ଲଠ ବେଳ ହେଲ୍ଣି ଆସି, କେତେବେଳ ଯାଏ ଆଉ ଗାଧେଇବା ।

ଢହେଁ ଉଠି ପଡ଼ ପିନ୍ଧଲ ଲୁଗା ଦ'ଖଣ୍ଡି ଧୋଷାର ଆଣି ବେଢ଼େଇ ହୋଇ ପଡ଼ ଏ ଯ୍ୱା ବାଟରେ ସେ ତା ବାଟରେ ଘରକୁ ଗ୍ଳଲଗଲେ ।

ସେଦିନ ଡାଆଣିଆ ଖରାବେଳେ ସାରଆଦାନ୍ ଗଲା ଦାଦବୁଢ଼ା ମୁଣ୍ଡିଆ ଆଡ଼କୁ । ମୁଣ୍ଡିଆ ଉପରୁ ସାରଆଫୁଲ ସେତେବେଳେ ଓହ୍ଲାଉଥାଏ । ଦାନ୍ କହିଲା, କୁଆଡ଼େ ଯାଇଥିଲୁ କହେ ?

ଫୁଲ୍ କହିଲା ଆମ ମାଈ ଘୁଷୁରିଟା ହଜିଛି ଯେ ଖୋଜିବାକୁ ଯାଇଥିଲି କାଳେ ଏଆଡ଼େ ଆସିଥିବ ବୋଲି । ତୁ କୁଆଡ଼େ ଯାଉଛୁ ?

ଯାଉଛି ପୋଖରି ବସି ଆସିବି । ତଳେ ଖାଲି ଲୋକେ ସାଲୁବାଲୁ ହଉଛନ୍ତି ।

ଦୁଇ ସଖି ପରସ୍ପରକୁ ଟିକିଏ ଚାହିଁଲେ । ତାପରେ ପରସ୍ପରକୁ ପଛ କୁଲେଇ ଦେଇ ଚାଲିଗଲେ ।

ସାରଆଦାନ୍ ପହଞ୍ଚି ଦେଖିଲା, ଦାଦବୁଢ଼ାର ପଗଡ଼ି ଉପରେ ସଜ ଫୁଲମାଳ ଝୁଲୁଛି । ଟାଣି ଛିଣ୍ଡେଇ ଫୋପାଡ଼ି ଦେଇ ନିଜ ଅଣ୍ଟିରୁ ରଙ୍ଗ ମନ୍ଦାରର ଫୁଲମାନେ କାଢ଼ି ସେଠି ଝୁଲେଇ ଦେଲା । ଦାଦିବୁଢ଼ାକୁ ଦି'ହାତରେ କୁଣ୍ଢେଇ ଟିକିଏ ଗେଲ କରି ତୁନି ତୁନି କହିଲା, ଦାଦବୁଢ଼ା, ତୁ ମୋ ଫୁଲ ପିନ୍ଧିବୁ, ଆଉ କାହାରି ଫୁଲ ଛୁଇଁବୁ ନାହିଁ, ନୋହିଲେ ମୁଁ ରୁଷି ବସିବି, ପେଜ ପାଣି ଛୁଇଁବି ନାହିଁ । ବୁଝିଲୁ, ଆଉ ମୋ କଥା ତୁ ଭାଙ୍ଗିବୁ ନାହିଁ ।

ସାରଆଦାନ୍ ଚାରିଆଡ଼କୁ ଟିକିଏ ଚାହିଁ ଦେଇ ମୁହଁ ମାଡ଼ି ପଡ଼ିଲା ଦାଦବୁଢ଼ା ଆଗରେ । ପଡ଼ି ପଡ଼ି ପଥର ଉପରେ ମୁଣ୍ଡ ବାଡେଇ କୋଡ଼ିଏ ଥର ଦଣ୍ଡବତ ହେଲା । ଚାଲି ଆସିଲା ।

ସେହିଦିନୁ ଦୁଇ ସଖୀଙ୍କର ବନ୍ଧୁତା ଭାଙ୍ଗିଗଲା ।

ସଞ୍ଜବୁଡ଼େ ମୁରନ୍ ନଈର ପାଣି ଝକ୍ ଝକ୍ କରି ଛଳଛଳେଇ ଆସେ । କଇଁସାରି ମାଛ କୂଳକୁ ଆଉଜନ୍ତି । ନଈ ମଝିରେ ବଡ ବଡ ପଥରର ଚଟାଣ ଆଉ ଚଉତରା । ପଥର ଫାଙ୍କରେ ମେଞ୍ଚା ମେଞ୍ଚା ବେଣାବୁଦା ଆଉ ଦନ୍ତୁଆ ଗଛ । ସ୍ଥାନେ ସ୍ଥାନେ ପୋଖେ ପୋଖେ ସରୁ ଧଳାବାଲି । ତହିଁରୁ ଗୋଟାଏ ପଥର ଉପରେ ଠେଙ୍ଗାଜାନ ଗାଢ଼ ମାଡ଼ି ବସିଥାଏ, ଗୋଡ଼ ଲମ୍ବେଇ ଦେଇ । ହାତରେ ଖଣ୍ଡେ ବନ୍ସୀ-ଖଡା ।

ଚହ୍ନିରେ ଯେଉଁ ଡୋର ଲାଗିଛି ସେଥିରେ କଣ୍ଟା ପଶିବଡ଼ି ବନ୍ଧା ହୋଇଛି ଗୋଟାଏ ଗାଅଣ୍ଟା ମାଛ ଓ ମାଛର ଠିକ୍ ମୁଣ୍ଡପାଖେ ଗୋରୁର ଲାଞ୍ଜବାଳର ଗୋଟିଏ ଫାଶ । ତା'ର କୌପୁନୀ ଅଣ୍ଟାରେ ଗୋଟିଏ ପତ୍ର କହାଳୀ ଖୋସା ହୋଇଛି, ସେଥିରେ ଅଳ୍ପ ଟିକଏ ଜଡ଼ାତେଲ । ଠେଙ୍ଗାଜାନ କାନରୁ କାଢ଼ି ବହଳ ପିଙ୍କା ଖଣ୍ଡିକ ଟିକଏ ଫୁଙ୍କିଦେଇ ପୁଣି କାନରେ ଗେଞ୍ଜିଦିଏ । ତାପରେ ବନ୍ସୀ ଡୋରକୁ ପାଣିରୁ ଉଠେଇ ନେଇ ଫାଶରେ ଟିକଏ ଜଡ଼ାତେଲ ବୋଳି ଦେଇ ପୁଣି ବନ୍ସୀକୁ ପାଣିରେ ପକେଇ ଚାହିଁବସେ । କେତେବେଳେ ବଡ଼ କଇସାଗ ମାଛ ଆସି ଗାଅଣ୍ଟା ମାଛକୁ ଭୁଷିବ ଓ ଫାଶରେ ଧରା ପଡ଼ିବ ।

ଜଙ୍ଗଲରେ ଅନ୍ଧାର ପଶେ, ଠେଙ୍ଗାଜାନ ମାଛଧରାରେ ମନଦିଏ । ସଞ୍ଜବେଳଆ ନଈ ଭିତରେ ପଥର ଉପରେ ବସି ପଡନ୍ତି ପଞ୍ଝା ପଞ୍ଝା ବଗ ଓ ମାଛରଙ୍କା । କୁରେଇ ଫୁଲର ସୁବାସରେ ପବନ ଭରି ଯାଇ ଓହଳିଯାଏ । ସୁଲୁସୁଲିଆ ପବନରେ ଉଡ଼େ ସୁନାରିଫୁଲର ଲମ୍ବ ବେଣୀ ମୁଗନ୍ ନଈର ଦି'କରରେ ।

ଠେଙ୍ଗାଜାନ ବସି ବସି ମାଛ ମାରେ ।

ପଛଆଡ଼ୁ ଗାଁ ଭୁଠରୁ ହସ ଶୁଭେ, ପାଣି ଖଳ ଖଳ ଶୁଭେ । ଚେନାଏଁ ଦିଶିଯାଏ ବାଙ୍କର କରପଟିଆ ।

ଠେଙ୍ଗାଜାନ ଫାଶରେ ଜଡ଼ାତେଲ ଦେବାକୁ ଭୁଲିଯାଏ । ପିଙ୍କା ଲଗାଇବାକୁ ଭୁଲିଯାଏ । ଖାଲି ପାଣିକୁ ଏକାଆଖିରେ ଅନେଇ ରହି ଭାବେ, କଣ ସେ ଭାବେ ତା'ର ଅନ୍ତ ପାଏ ନାହିଁ । କେବଳ ଅନ୍ଧାରର ଓଜନ ଯେମିତି ମୁହଁର ଗୁଇଠା ତା'ର ଓହଳି ପଡ଼େ ପାଣି ଉପରେ ।

କ୍ରମେ କୁହୁଡ଼ି ବୋହାଏ । ଅନ୍ଧାର ସନ୍ଧିରୁ ଝିଙ୍କାରି ଝିଁ ଝିଁ କରେ । ବର୍ତ୍ତମାନ ଆଉ ଭବିଷ୍ୟତର ଝିଙ୍କା ଟଣାରେ ପଡ଼ି ମନଟା ଦୋହଲି ଦୋହଲି ଯେଉଁଠି ସେଇଠି ଅଟକ ରହିଯାଏ । ମଝିରେ ଖେଞ୍ଚା ମାରେ ଅତୀତ ଆଉ ସ୍ମୃତି । ସମାଧାନ ହୋଇପାରେ ନାହିଁ । ଜଟିଳତା ଭିତରେ ବାଜଉଠେ କରୁଣ ରାଗିଣୀ, କୁହୁଡ଼ିଆ ଆକାଶ ତଳେ ଶରବଣ ଭିତରେ ସାଇଁ ସାଇଁଆ ପବନ ପରି ।

ବାପ ଖୋଜେ ପୁଅ କାହିଁ ଆସି ନାହିଁ । ମା ଖୋଜେ ଏତେବେଳ ହେଲା ଆଜ ପୁଅ ଗଲା କୁଆଡ଼େ । କେତେବେଳେ ଯାଇ ପଖ ଚୌକୁମାରେ ଅଜାଡ଼ ପେଜ ମଧ୍ୟ ପିଇଥିଲା, ସେ କ'ଣ ଏ ପର୍ଯ୍ୟନ୍ତ ରହିଥିବ ପେଟରେ ?

ପୁଅ ଘରକୁ ବାହୁଡ଼େ । ବାପର ଛାତି କୁଣ୍ଢେ ମୋଟ ହୋଇଯାଏ । ହଁ, ଏଇ ତା'ର ପୁଅ, ବୁଢ଼ା ଦାଦର ହାତ ଆଣ୍ଡା ବାଡ଼, ଠେଙ୍ଗା । ଦେଖିଲେ ଶତ୍ରୁ ଶଙ୍କିଯିବ ।

ଦାଦବୁଢ଼ା, ଚୋର ଦସ୍ୟୁ ।

ମା'ର ପାଦ ତଳେ ପଡ଼େ ନାହିଁ । ଦାଦ ଆଉ ରାତି କଟିଯାଏ ଦୋ'ଟି ଲୋକଙ୍କର । ପୁଅର ସୁଖର ସ୍ୱପ୍ନ ଦେଖି ଦେଖି, ଆଉ ତାଙ୍କର ଅନବରତ ଭାବନା, ପୁଅ ବଡ଼ ହେବ । ଘରକୁ ବୋହୂ ଆସିବ । ସେ ବୁଟୁରୁ ବୁଟୁରୁ ବୁଲୁଥିବ । ମିଠିମିଠି କଥା ଅନେଇଥିବ, ବୁଢ଼ା ବାପକୁ ପାଣି ଗାଧୋଇ ଦେବ । ଶାଶୁକୁ ଘରୁ ଠେଲିଦେଇ ଆପେ ଆପେ ମାଣ୍ଡିଆ ପେଜ ରାନ୍ଧ ପକେଇବ । ମୁର୍ଦ୍ଦ ଶାଗ୍ ଧୋଇ ପକେଇବ । ନୂଆ-ବୋହୂଟି ।

ପାନ-ଘାଟରେ ଦାଦବୁଢ଼ା ଖୁମ୍ବକୁ ଘୁଞ୍ଚି ଠିଆ ହୋଇ ରହି ପରଜୁଣି ବୁଢ଼ୀ କପାଳରେ ହାତ ଯୋଡ଼ି ଜଣାଣ କରେ । ପିଲ୍ଲା ଖାଦ ବେଡ଼େଇ ହୋଇ ପଡ଼ିବାକୁ ଭୁଲିଯାଏ । ଆଉ ବୁଢ଼ା ଗାମ ନାଇକ ନିତି ନିତି ରଇତମାନଙ୍କୁ ଫରମାସି ଦିଏ, ଆଜ କୁକୁଡ଼ା ବଳି ପକାଅ, ଆଜ ପାରୁଆ ପୂଜ, ଆଜ ମଦ ରାନ୍ଧ...... ।

ଦାଦ ବୁଢ଼ା ହସିଲା ପର ଦିଶେ ।

ବାଟେ ବାଟେ ଶିସୁ ଅସୁଲ କରି କରି ଜାନ ଆଉ ମୁଦୁଲ । ହରିଜାନ ଆଉ ଗାମ ମୁଦୁଲି ଦୁଇଜଣଯାକ ଯାଆନ୍ତି । ଗାମ ନାଇକ ଠେଙ୍ଗା କଥା ଗପେ । ହରିଜାନ ଗପେ ସାହିଆଦାନ୍ କଥା । ବାରକ୍ ଚାଁଚେର ଭମ୍ ପଛେ ପଛେ ଘୁଲେ, ତା'ର ବାପାର ବାପାର ପୁରୁଣା ଠେଙ୍ଗା ଖଣ୍ଡି ଧରି । ବେଳେବେଳେ ନାଇକ କଥାରେ ବେଳେବେଳେ ଜାନ କଥାରେ

ସା ହଏ, ମୁଣ୍ଡ ଟୁଙ୍ଗାରେ । ଏହାପରେ ସେମାନେ ଜଙ୍ଗଲ ଭିତରେ ବଡ଼ ଗାଁର ପଲ୍ଲୀପୁଟ୍ ଗାଁ ଗୁଡ଼ା ଗାଁମାନଙ୍କୁ ଯାଆନ୍ତି । ଶିବ୍‌ଲୁ, ଝଂଗାମନ୍ ପାଖକୁ ଛେଳିଟା, କୁକୁଡ଼ାଟା ଭେଟି ନେଇ ଯାଆନ୍ତି । ମୁନିଆ ପଥର ବାଟରେ, ଗୋଡ଼ଖିଆ ଖାଲ ବାଟରେ, ଘୁଞ୍ଚଫଟା ଡ଼ିପ ବାଟରେ । ଗୋଟିଏ ଗୋଟିଏ କଥା ଗପି ଗପିକା ସେମାନେ ଯାଆନ୍ତି ଆସନ୍ତି । ନାଇକ ଜାନି ମୁହଁକୁ ଜାନି ନାଇକ ମୁହଁକୁ ପରୁଶିଲା ପରୁଶିଲା ଆଖିରେ ଚାହାଁ ରହନ୍ତି । ଅସଲ କଥାଟା କେହି ପକାଏ ନାହିଁ । ରାମ ନାଇକ ସାଶିଆଦାନ୍‌କୁ ମାରେ ନାହିଁ । ହରିଜାନି ଝୋଲାଟଙ୍କା କଥା ପକାଏ ନାହିଁ, ଦିନ ଚାଲିଯାଏ ।

ଗାଁର ଲୋକେ ଦାଦିବୁଢ଼ା ଆଡ଼କୁ ଅନାଇ ରହନ୍ତି । ଗାଁର ଝିଏ ଠେଙ୍ଗାଜାନି ଗୀତ ଆଡ଼କୁ ଅନାଇ ରହନ୍ତି । ଦାଦିବୁଢ଼ା ଅନେଇ ରହେ ଫାଙ୍କା ଆକାଶକୁ ନିଶ୍ଚଳ ନିସ୍ତବ୍ଧ ହୋଇ । କେବଳ କୌତୁକ କରେ ହୁଙ୍କାବୁଢ଼ା । ତାହା ଉପରେ ଜୀବନ୍ତ ଶକ୍ତିର ଚଳପ୍ରଚଳ ଲାଗେ । ଭଇମାନେ ଧାରି କରି ଏମୁଣ୍ଡ ସେମୁଣ୍ଡ ଶୋଭାଯାତ୍ରା କରନ୍ତି । ଧାରି ମୁହଁରେ ଗୋଟିକିଆ ବେଙ୍ଗ ଗୋଟିଏ ଲେଖା ଓର ପାତି ଜିଭ ଲହ ଲହ କରନ୍ତି ପୂଜିପତି ସାହୁକାର ପରି । ଦାଦିବୁଢ଼ାର ହଲଚଲ ନାହିଁ । ଗହଳ ଚହଳ ନାହିଁ, ସେ ସ୍ଥିର । କିନ୍ତୁ ଦୁନିଆ ସ୍ଥିର ନୁହେଁ ।

ପାଖର ଜଙ୍ଗଲର ସ୍ଥାନେ ସ୍ଥାନେ ପୋଡ଼ୁମଞ୍ଚ ହେବାପାଇଁ ଗାଁର ଲୋକେ ଉତ୍ସବ କରି ଚେକ ଦେଇ ସାରିଲେଣି, ଯେତିକ ଜାଗା ସଫା ହେବ ତା'ର ସୀମା ଠିକ୍ କରିବା ପାଇଁ ଏଠି ଖଣ୍ଡେ ସେଠି ଖଣ୍ଡେ ବଡ ବଡ ଗଛ ହାଣି ପୋଡ଼ ହଆହୋଇଛି । ତାହା ପରେ ଦିନେ ମଦ ରନ୍ଧା ହେବ । ଏକାଥରକେ ଦେଢ଼ଶ କୁରାଢ଼ୀ ପଡ଼ିବ, ଶାଳ, ପିଆଶାଳ, ଆମ୍ବ, ଡମ୍ବିରି ସମସ୍ତେ ଭୂଇଁରେ ପଡ଼ିବେ । ପାହାଡ଼ ମୁଣ୍ଡରେ ଚଢ଼ା କରି କାହୁଅର ଘୋଳ ଦହି ଡାଳ ବଣର ମଣିଷ ସେଠି ଘାତ ଗୋଟେଇବ । କି ପାଏ ଜଙ୍ଗଲରୁ ସେ ? ଜଙ୍ଗଲ ଉଜାର, ବାଘ ବଣର, ମଶା ଡାଆଁଶ ଅରମାର ଘାତ ମୂଠାକ ତା'ର, ତା'ର ସୁଆଁ ଅଳସି ମଣ୍ଡିଆ ଜଡ଼ା । ତାପରେ ଦିନେ ଫାରେଷ୍ଟ ଆସିବ, ପୋଡ଼ୁ ଦେଖି ତାଙ୍କୁ କୋଟଘରକୁ ଡାକନେବ । ଦାଦିବୁଢ଼ା ଆଡ଼କୁ ଅନେଇଁ ଅନେଇଁ ଦିସାଣ କହିବା ଯୋଗ ପାଗ ଉଣ୍ଡି

ବାଟେ ବାଟେ ସେମାନେ ଚାଲିଯିବେ । ତା'ପରେ ଜୋଣମାନା ଟଙ୍କା—ଯାଜ ପଛେ ଭାତ ମୁଠାକରୁ କଷ୍ଟ ହେଲେ ଚଳବ ଧୂଅର ଝୋଳ ବାବଦକୁ । ସେତିକ ହେଲେ ଯଥେଷ୍ଟ, କାରଣ ପାହାଡ଼ର କଙ୍କରଠୁଁ ମାଣ୍ଡିଆ-ପେଜ ମଦଠ ବେଶୀ ସ୍ୱାଦ । ଆଉ ସଢ଼ା-ମାଣ୍ଡିଆର ପେଣ୍ଡମ୍ ଲନ୍ଧା ମଦଠ ।

ଇତିହାସର ପୃଷ୍ଠା ଗଡ଼ ଚାଲିଛି । ଦାଢ଼ବୁଢ଼ାର ଗୋଡ଼ତଳେ ଝରଣା କୂଳରେ ବେଆଇନ ମଦ ରନ୍ଧା ଆରମ୍ଭ ହୋଇଛି । ଚୁଲି ଉପରେ ସଢ଼ା ମହୁଲର ଫାସ୍ ଭର୍ତ୍ତି ହାଣ୍ଡି । ତାହା ମୁହଁକୁ ମୁହଁ ଲାଗି ଆଉ ଗୋଟିଏ ସାନ ହାଣ୍ଡି । ସନ୍ଧିରେ ଗୋବର ଲେସା ହୋଇଛି । ସେଥିରୁ ନଳା ଲାଗିଛି ତଳେ ଥିବା ନବୁଜ ଧର୍ଣି ହାଣ୍ଡିରେ । ହାଣ୍ଡି ଭିତରେ ହାଣ୍ଡି ପଶି ଧର୍ଣି ହୋଇଛି । ଦାଢ଼-ବୁଢ଼ାକୁ ଭୋଗ ଲଗାଇ ମଦ ତିଆରି ଚାଲିଛି । ମହୁଲ ମଦ ପିଇ ଆଖି ଢୁଲୁ ଢୁଲୁ । ଘରେ ଭାତ ନାହିଁ । ପେଟରେ ବେଆଇନ ରନ୍ଧା ମଦ । ମୁହଁରେ ଅନର୍ଗଳ ହସ ଆଉ ପାହାଡ଼ ଉପରେ ଖରା ନାହିଁ ତରା ନାହିଁ ଭୁଷ୍ ଭୁଷ୍ ଚାଷ, କାମ ଲାଗିଛି ।

ଦାଢ଼ବୁଢ଼ା ଚାହିଁ ଦେଖୁଛି । ହସିଲା ପରି ଦିଶୁଛି ।

ଏହିପରି ଦିନେ ଅଳସି ଫୁଲିଆ ଦିଆଲି ମାସ ଦି'ପହରରେ । ଠେଙ୍ଗାଜାନ ଗଡ଼ ଆସୁଥିଲା ଶାଳବେଡ଼ା ଜଙ୍ଗଲ ଉପରୁ ତଳ ଖାଲକୁ । ମୁହଁପାଖେ ପାଟେଡ଼ ପର୍ବତ, ଯାହାକୁ ଡେଇଁଲେ ଲୁଛା ଖାଲର ଢାଲୁ ପଡ଼େ ।

ଶୀତଦିନର ଦି'ପହରିଆ ଖରା କେତେ ଚାଉଁ ଚାଉଁ ଲାଗେ, ଆଉ ମନଟା ଲାଗେ ମଲୁଆଳିଆ, ଦୋହଲିଲା ପରି ।

ଖାଲଟି ସେତେ ବଡ଼ ନୁହେଁ, କିନ୍ତୁ ଚାରିପାଖେ କରମଙ୍ଗା ପରି ପାହାଡ଼ର ଧାର, ଆଂସଆଂସିଆ । ତାହାର ମୁଣ୍ଡଠୁ ଗୋଡ଼କୁ ଜଙ୍ଗଲ ସଫା ହୋଇ ଖାଲି ଫୁଲଫୁଟା ଅଳସି କ୍ଷେତ । ହଳଦୀ ଗରଗର ।

ଢାଲୁ ତଳେ ଅଧା ପୋତି ହୋଇଥିବା ମଠୁଆ ଝରଣା । ତହିଁରେ ଫିକା ସାବୁଜା ଧାନ କ୍ଷେତ । ଗୁଡିଏ ଉଞ୍ଚରେ ଧାନ ବଢ଼ିଛି । ମଝିରେ ବଙ୍କା ଟଙ୍କା ନାଳି ହୋଇ ଖଣ୍ଡିଏ ହୁଡ଼ ରାସ୍ତା । ଖଣ୍ଡିତାର ଧୀମନ୍ତର ସିନ୍ଦୂର ଗାର ପରି ।

ଆଖିଝୁଲସା ଆଉଟା ବର୍ଣ୍ଣର ନଶା ଠେଙ୍ଗାଜାନର ମୁଣ୍ଡକୁ ଉଠିଥାଏ, ଧାଇଁ ଧାଇଁ ସେ ଆସୁଥାଏ ।

ଝରଣା ଉପରେ ମୋହିଁ ପଡ଼ିଥିବା ପଥର ପାଖେ ସେ ଥିରହୋଇ ଠିଆ ହେଲା । ଖଣ୍ଡେ ଆଗରେ ଦେଖିଲା । ବାଣୁଆ ଯେପରି ଓଡ଼ିଆ ନଳ ଗସ୍ତା କରେ ନିଆଁ ଲଗାଇ ନରେଖି ବୁହେଁ ଗୋଡ଼ା ଫିପିବା ପୂର୍ବରୁ ।

କେହି କୁଆଡ଼େ ନାହିଁ । ଖାଲି ବୁଦପାଖର ଦବି ଖୁଆ ପାହାଡ଼ରେ କାଉଁକର ଟାପରା ଖେଳା ଖରା ଅଜାଡ଼ ହୋଇ ପଡ଼ ହସୁଛି, ଆଉ ଡାକୁଛି । ଠେଙ୍ଗାଜାନ ମୁହଁ ବଢ଼େଇ ଗ୍ରହିଁଲା । ତଳର ବେଡ଼ା ନଣରୁ ସେତେବେଳେ ଏଲିଓ ପ୍ରାଚୀନ୍‌ର ଘର ଅଳେଇବରଆର ଝିଅ ସନ୍ତୋଷ୍‌-କୁମାରୀ ଧୀରେ ଧୀରେ ଉଠି ଆସୁଛି । ବାଳ ମୁକୁଳା ହୋଇ ପଡ଼ିଛି । ପାଣି କେରା କେରା । ଧିଅରେ ଲୁଗା ନାହିଁ । ଠେଙ୍ଗାଜାନକୁ ଦେଖିବାକୁ ଗ୍ରହିଁ ଗ୍ରହିଁ ସେ ଦେଖିଲା । ସନ୍ତୋଷ୍‌କୁମାରୀ ଖଣ୍ଡେଦୂର ଗ୍ରଲିଯାଇଁ ତାଆଡ଼କୁ ମୁହଁକରି ଠିଆ ହୋଇ ଦୁ'ହାତରେ ବାଳ ଚପି ଚପି ପାଣି ନିଗାଡ଼ ଦେଲା । ତା'ପରେ ସାବୁଜା ଲୁଗା ଖଣ୍ଡିଏ ପିନ୍ଧିଲା । ବ୍ଲାଉଜ୍ ଖଣ୍ଡି ପିନ୍ଧି ନକୁଟି ନକୁଟି ବୋତାମ ଲଗାଇଲା । ଠେଙ୍ଗାଜାନ ଧୂଡ଼୍‌ମୂଡ଼୍ ପିଟା ଗୁଣ୍ଡରେ ଥିରହୋଇ ଗ୍ରହିଁ ରହିଲା । ସନ୍ତୋଷ୍‌କୁମାରୀ ବାଳ ମୁକୁଳା କରି ମଠେଇ ମଠେଇ ହେଲା । ହଠାତ୍ ଠେଙ୍ଗାଜାନକୁ ଚିହ୍ନିପାରିଲା ପରି ଏଣିକି ଆସ ଗ୍ରହାଣୀରେ ହସି ଉଠି ତରବର ହୋଇ କାନଟା ବେକ ଉପରେ ଲମ୍ବେଇ ଦେଲା । ସିଧା ହୋଇ ଠିଆହୋଇ ଯାଇ ପଛ ବୁଲେଇ ଦେଇ ଗୋଟିଏ ଗୋଟିଏ ପାହୁଣ୍ଡ ପକେଇଲା ।

ଠେଙ୍ଗାଜାନ ଆଉ ଅଟକ ରହିଲା ନାହିଁ । ପ୍ରଥମେ ତ ଘାରି ଅପ୍ରସ୍ତୁତ ଲାଗିଲା, ମୂହୂର୍ତ୍ତେ ମନଭିତରେ ଦ୍ୱନ୍ଦ୍ୱ ହେଲା ଯେ ସେ ପଛ ବୁଲିପଡ଼ି ଫେରିଯିବ ଠିକ୍‌ଏ, ନା ଆଗେଇ ଗ୍ରଲିବ । ତାହାପରେ ପରେ ପୁଣି କୁତୂହଳର ଜୟ ହେଲା, ଠେଙ୍ଗାଜାନ ମାଡ଼ ଗ୍ରଲି ଆସିଲା ।

ଖାଲ ସେପାରି ପାହାଡ଼କୁ ଉଠିବାକୁ ପଡ଼େ ଗୋଟିଏ ଝୋଲା ବା ଗଡ଼ିଆରଆ ଝରଣାର ଶେଷ । ଠିକ୍ ପାହାଡ଼ ମୁଣ୍ଡରୁ ଖାଲକୁ ଗଡ଼ପଡ଼ିଛି ।

ତାହାର ଅତଡ଼ କରେ ଘଞ୍ଚ ଲଟାର ବଣ । ଆରହାତ ପାହାଡ଼ର ଛାଲୁ ଖାଖ ହୋଇ ଉଠିଛି, ବୁଦା ବୁଦା ଜଙ୍ଗଲ । ତଳେ ଧଇଁସଇଁ ହୋଇ ଛଳ ଛଳ ପାଣି ଧାଉଁଚିଏ ଉଠିପଡ଼ ଖାଲର ବେଢ଼ା-ନଈକୁ ଗଡ଼ ଚାଲିଛି । ନସ୍ତବ୍ଧତା ଭିତରେ ଶୁଭେ ବଡ଼ ସୁନ୍ଦର । ଅତଡ଼ ଉପରେ ଚଲାବାଟ, ଉଠାଣି ବାଟ, ଘାଇ ଭର୍ତ୍ତି, ଶୀତଳ, ଦୁଇପାଖର ବୁଦା ଓ ଲଟାର କୁଞ୍ଜ ଭିତରେ ଠିକ୍ ଗୋଟିଏ ସୁଡ଼ଙ୍ଗ ପଥ ପରି ।

ସେଇ ଘାଇବାଟେ ଉଠିଲେ ଦୁଇଟି ଲୋକ । ଅଳ୍ପ ଆଗରେ ଅଲେଇ ବଉଆର ଝିଅ ସନ୍ତୋଷକୁମାରୀ, ପଛେ ପଛେ ଠେଙ୍ଗାଜାନ । ଏତେବଡ଼ ନସ୍ତବ୍ଧ ପ୍ରକୃତି ଭିତରେ କେବଳ ସେହି ଯୋଡ଼ାଏ ପ୍ରାଣୀ ।

ସନ୍ତୋଷକୁମାରୀ ଅଳସେଇ ଅଳସେଇ ବାଟ ଚାଲେ । ଫୁଲଭର୍ତ୍ତି କଣ୍ଟା ଲଟା ତା'ର ପଣତକୁ ଧରି ନଏ । ଗଛର ସିଅ ତା'ର ଗୋଡ଼ ବଳାରେ ଗୁଡ଼େଇ ହୋଇଯାଏ । ପଛଆଡ଼କୁ ଚେର୍ଚ୍ଛା ହୋଇ ବୁଲିପଡ଼ ଆପଣାକୁ ହୁଗାଳୁ ହୁଗାଳୁ ନ ଜାଣିଲା ପରି ସେ ଲୁଗା ହୁଗୁଳା କରି ପକାଏ । ଉଠୁପଡ଼ ଛାତି ଉପରେ ଦରଫିଟା ବ୍ଲାଉଜର ବୋତାମ ନଠେଇ ନଠେଇ ଟିପିଦିଏ । ଷଣେ ଅଟକ ରହେ, ପଛେ ପଛେ ଠେଙ୍ଗାଜାନର ଜଳନ୍ତା ଶିକାରୀ ଆଖି । ସନ୍ତୋଷକୁମାରୀ ହସିଦିଏ । ଠେଙ୍ଗାଜାନର ଛାତିର ଧୂଡ୍ ମୁସ୍ ଆହୁରି ଜୋର ଜୋର ବାଜେ ।

କିଛି ସମସ୍ତ ଗଲା, ସେମାନେ ପହଞ୍ଚିଲେ ସମ୍ବରଖୋଜ ଚଟାଣ ପାଖେ । ସେଠି ଝରପାଖେ ଗଛ ଲଟା । ବାଁ ଡାହାଣେ କାନ୍ଥ କଟାହେଲା ପରି ପାହାଡ଼ର ଅଟଟ କାନ୍ଥ । ସାମନାରେ ସରୁ ହୋଇ ରାସ୍ତାଟିଏ ଉଠାଣି ଚଢ଼ି ଚଢ଼ି ଚାଲିଯାଇଛି । ତଳକୁ ଗଡ଼ାଣି । ସେହି ସ୍ଥାନଟିରେ କେବଳ ଚଟାଣ । ସମ୍ବର ଖୋଜର ଚିହ୍ନ ପରି ପଥରରେ ଦୁଇଟା ଗାତ ଉପରକୁ ଜଳ ଜଳ ଦିଶୁଛି । ଗୋଟିଏ କଡ଼ରେ ବଡ଼ ଉଚ୍ଚ ପଥର ଖଣ୍ଡେ ଆଉଜା ରହିଛି । ତା'ରି ସନ୍ଧରୁ ପାଣି ଝିରି ଝିରି ଝରୁଛି ।

ସନ୍ତୋଷକୁମାରୀ ସେଇ ଚଟାଣ ଉପରେ ଗୋଡ଼ ଲମ୍ବେଇ ଦେଇ ବସିପଡ଼ ଦୁଇ ହାତରେ ଗୋଡ଼ ଘଷିହେଲା । ଠେଙ୍ଗାଜାନ କ୍ରମେ ତଳୁ ଉଠି ଆସୁଥିଲା ।

ସନ୍ତୋଷକୁମାରୀ ସାମନାକୁ ଚାହିଁ ହସିଲା । କହିଲା, କରେ, ସେମିତ କାହିଁକ ଚାହୁଁଛୁ ମତେ ? ତୁଣ୍ଡରେ ପଦେ କଥା ନାହିଁ । ମୁହଁରୁ ଝାଳ ଫିଟିଯାଉଛି, ଠେଙ୍ଗାଜାକ ଉଭାହେଲା । ସନ୍ତୋଷକୁମାରୀ କଥା ପଦ କହିଦେଇ ହସି ହସି ପଥରରେ ଲେଟିଗଲା, ଦୋହଲି ଦୋହଲି ।

ତୁଣ୍ଡ ନ ଖୋଲି ଠେଙ୍ଗାଜାକ ଦୁଇ ହାତରେ ତାକୁ ଉଠେଇ ନେଲା । ଗୁନ୍ଥରେ ଚାପି ଧରି ଫୁଲ ପରି ଟେକ ନେଇଗଲା ପାଣିଥିବା ପଥର ସେପାଖକୁ—

ଉପରେ କୁହୁଡ଼ିଆ ଆକାଶ । ମୁଣ୍ଡପୂରା ଚଳକୁ ବୋଲି ଛୁଣ୍ଡି ପଡ଼ୁଛି ହଳଦିଆ ଅଳସି ଫୁଆଁ ଣି କରମଙ୍ଗା ପାହାଡ଼ର ସନ୍ଧ ତଳର ଗମ୍ଭୀର ଖାଲକୁ, ବେଡ଼ା ନଈରେ ଯେଉଁଠି ଝକ୍ ଝକ୍ କରୁଛି ଫିକା ସାବୁଜା ଧାନର ବଣ ।

—୪—

ଏତେ ବଡ଼ ଦୁନିଆଁରେ ସବୁ ପଡ଼ି ରହିଛି । ହୃଦୟରେ ଲକ୍ଷେ ଆକାଙ୍କ୍ଷା ଧରି ଭୋକିଲା ଆଖିରେ ଧୂ ଧୂ ବାଲି ଉପରକୁ ଅନାଇଁ ରହି ରହି କେତେଲୋକଙ୍କର ଜୀବନ ବିତିଯାଏ, ଆଉ ପୂରେ ନାହିଁ, ଚାହିଁବା ହିଁ ସାର ହୁଏ । ଯେ ହାତ ବଢ଼ାଏ ସେ ଯାହା କିଛି ପାଏ । ମନର ଶୋଷ ବଢ଼ୁ ପଛେ ତା'ର ଦେହର ଭୋକ ମେଣ୍ଟେ ।

ଅନାଇ ରହିଲେ ଚାହିଁ ଚାହିଁ ସାର ହୁଏ ଖାଲି ଚାହିଁବା । ଦାଦବୁଢ଼ା ମୁଣ୍ଡିଆ ଉପରେ ଖାଲି ଚାହିଁ ରହେ ।

ଆଉ ଚାହିଁ ରହନ୍ତ କେତେ ଆଶାୟୀଲୋକେ ତଳର ଦୁନିଆଁରେ ।

କନ୍ତୁ ସନ୍ତୋଷକୁମାରୀ କେବଳ ଚାହିଁ ରହେ ନାହିଁ । ସେ ଆପଣାକୁ ଏପରି ଭାବେ ପ୍ରତଷ୍ଠା କରାଇପାରେ, ଯହିଁରେ ଭୁଲିହୁଏ ଯେ ସେ କେବଳ ଢମୁଣିଝିଅ; ଆଉ ମନେ ରହେ କେବଳ ଗୋଟିଏ କଥା, ସେ ସେ, ସେ ସନ୍ତୋଷକୁମାରୀ । ଧର୍ମ ଶିଖିବାକୁ ସେ ଅନେକ ଥର କୋରାପୁଟ୍ ଯାଇଛି । ବକ୍ତୃତା ଭିତରେ ଥିବା ଏତେ ପ୍ରକାର ମାତ ତା'ର ପୂରଣ ରହି ନାହିଁ ।

ମନେ ରହିଛି ଗିର୍ଜାଘରର ଉଚ୍ଚ ଚୂଡ଼ା, ଯେଉଁଠି ଢଂ ଢଂ କରି ଘଣ୍ଟା ବାଜେ । ଉତ୍ସବ ହୁଏ । ଦୂରର ପାଖର ମଣିଷ ଗହଣରେ ନିଜକୁ ଉବାଇ ଏ ଅନୁଭୂତି ଘୋଆ ଧରେ, ଏକ ବହୁ, ବହୁ ଏକ । ତା'ର ମନେ ରହିଛନ୍ତି ଆଜ୍ଞ ଆଜ୍ଞ ଭଉଣିଏ, ଯେଉଁମାନେ ସଫା ସୁତରା ହୋଇ ତିନି ଚାରି ପ୍ରକାର ରଙ୍ଗକରା ବଡ଼ ବଡ଼ ଲୁଗା ପିନ୍ଧନ୍ତି, ବ୍ଲାଉଜ ଭିଡ଼ନ୍ତି, ହସି ହସି ଚାଲିଯାଆନ୍ତି ଏପାଖ ସେପାଖ । ସେ ସଫା ସୁତୁରା ହେବାକୁ ଶିଖିଛି, ବ୍ଲାଉଜ ପିନ୍ଧି ଶାଢ଼ୀ ପିନ୍ଧି ଶିଖିଛି । ଶିଖିଛି ଆବରଣର ବ୍ୟବହାର, ସମସ୍ତ ଅସମସ୍ତ ପାଇଁ । ବହୁତ ଶିଖିଛି । ଖାଲି ଶିଖି ନାହିଁ ରହିବା । ଅନ୍ଧାର ନିଶାରେ ବଡ଼ ସହରର ହୋଟେଲ ରାସ୍ତା ଉପରେ ରାସ୍ତାର ମାଲଗୁଡ଼ା ଲଣ୍ଠ ଅଟକ ପିବାର ଦେଖିଛି । ଡେଙ୍ଗା ଡେଙ୍ଗା ଠେଙ୍ଗାଧରା ବାବୁଦଳ ମାଡ଼ି ଆସିବାର ଦେଖିଛି, ଚଳନ୍ତା ଗାଡ଼ିରେ ରାସ୍ତାର ଅନ୍ଧାର ଦେଖିଛି, ବରଷା ଅନ୍ଧାରରେ ପାନ୍ଥଶାଳାର ଆରାମ୍ ଦେଖିଛି; କିନ୍ତୁ ଦେଖି ଦେଖି ଠକିଛରେଇଛି, କେହି କାହା ପାଇଁ ଅଟକି ରହେ ନାହିଁ । ପାଣି ଗଡ଼ିଯାଏ । ଅଟକି ରହେ ଯେ ସବୁଦିନେ, ସେ କେବଳ ପଥର ।

କୋରାପୁଟ୍—ପାହାଡ଼ ଉପରର ବଣ ଜୁକୁଜୁକୁ ଧୋବଲା ସହର ତା'ର ସ୍ୱପ୍ନ ଭିତରେ ପଶିଛି ।

କିନ୍ତୁ କେବଳ ସ୍ୱପ୍ନ—ବରଷକେ ଦୁଇ ତିନି ଥର । ସବୁଦିନେ ସେଠି ହୁଏ ନାହିଁ । ମନର ଶୋଷ ଅବସ୍ଥା ବୁଝେ ନାହିଁ । ଜଙ୍ଗଲ ତା ପକ୍ଷରେ ମରୁଭୂମି ପରି, ଏଠି ଯାହା ସେଠି ତାହା, ସବୁଠି ସମାନ । ଖାଲି ନିଦୁଆ ଜଙ୍ଗଲ, ପଥର ଆଉ ଗଛ, ମଝିରେ ମଝିରେ ପୁକାଏ କ୍ଷେତ । ଏଠି ଲୋକେ ବୁଲି ବାହାରନ୍ତି ନାହିଁ । ବାହାରନ୍ତି କାଠ ହାଣି ନୋହିଲେ କ୍ଷେତ ହାଣି । ଧନସାକ କେବଳ ପେଜ ରନ୍ଧା, କନ୍ଦା ଖୋଳା, ଶାଗ ଧୂଆ । ଗାଁର ନାଚରେ ପର୍‌ଜା ଧାଂଙ୍ଗାକୁ ପର୍‌ଜା ଧାଂଙ୍ଗୀ । ସେମାନେ ସମ୍ପ୍ରଦାୟ ହିସାବରେ ଡମ୍‌ମାନଙ୍କୁ ଘୃଣା କରନ୍ତି । ଡମ୍ ବା କେତେ ଘର । ଚାରି ଘର ତ ମୋଟେ । ଧାଂଙ୍ଗା ମୋଟେ ତିନିଟା । ବେଣିପୁଁମଣି ସେ କଣଦାଢ଼ୀ କାଟେ ନାହିଁ, ମୁହଁ ଧୁଏ ନାହିଁ । ମସିକ, କଏ ତାକୁ ଅନେଇବ । ଆଜ ସିମନ, ତା'ର ପେଟଟି ଫୁଲ୍‌ଫୁଲ । ତା'ର କ'ଣ ରୋଗ ହୋଇଛି । ମସିକ

ଅସୁନ୍ଦର କଳୁ ମସିକ ହିଁ କେବଳ, ଚର ଚର ହୋଇ ମଲା ଗୋରୁ ପିଠିରୁ ଛାଲ କାଢ଼ିପାରେ । ଗୋରୁଙ୍କ ମାଉଁସ କରିପାରେ । ବେପାର ବାଟ ଦେଖେ । ହେଲେ ଗୋରୁର ଶିଙ୍ଗ ବାନ୍ଧେ । କଳୁ ବଡ଼ ଅସୁନ୍ଦର ସେ, ସନ୍ତୋଷ ତାକୁ ଛୁହେଁ ନାହିଁ ।

ରାତିର ନାଚରେ ସାତଟିଯାକ ଡମୁଣୀ ଧାଂଡ଼ୀ ଅଣ୍ଟାରେ ହାତ ଖୋସାଖୋସି ହୋଇ ହାତରେ କନା ଖଣ୍ଡେ ଖଣ୍ଡେ ଧରି ଉହୋ ହୋ ଚିତ୍କାର କରି ଡେଇଁ ଡେଇଁକା ପରଜା ଧାଂଡ଼ୀ ବ୍ୟୂହ ଭେଦ କରି ପରଜା ଧାଂଡ଼ାମାନଙ୍କୁ ଢେଗଉ କରି ନାଚନ୍ତି । ନାଚି ନାଚି ମଦ ପିଆ ହୁଏ । ମଦ ପିଇ ପିଇ ନାଚୁ ନାଚୁ ଆକାଶରେ ଅନ୍ଧାର ଗୂଢ଼ ହୋଇଯାଏ ।

ସେତେବେଳେ ଜଙ୍ଗଲ ଭୁଲି ହୁଏ ।

ଆଜି ଭୁଲିହୁଏ ନନ୍ଦଗାଁ ହାଟରେ ବେଳେବେଳେ, ଯେତେବେଳେ ନାନା ଦେଶର ଡମ୍ ଲୋକେ ଗୁଇ ପରି ପାଗଳ ଘଷାଘଷି ସମ୍ବର୍ଦ୍ଧନା କରାକରି ହୋଇ ଚରଚର ହୋଇ ଏପାଖ ସେପାଖ ଚାଲିଯାଆନ୍ତି ।

କଳୁ—ସ୍ମୃତିରେ ଖେଳା ବାଜେ । ବଡ଼ ସହରର ଢ'ଙ୍ଗନଥାଁ ଅନୁଭୂତ କୁହୁଳି ଉଠେ । ଧୂଆଁ କଳା ସ୍ୱପ୍ନରେ ହଜେ ଚଉଡ଼ା ରାସ୍ତା । ସେଥିରେ ମଟର ପଛେ ମଟର ଚାଲିଛି । ଗାଡ଼ିଯାକ ଖାଲି ଧାଂଡ଼ା ଧାଂଡ଼ୀ । ହସର ଲହଡ଼ି ଗାଡ଼ି ଉଛୁଳି ଅଜାଡ଼ି ହୋଇ ପଡ଼ୁଛି । ସବୁ ହସ ଝାଡ଼ିଝୁଡ଼ି କରି ନେଇ ସେମାନେ ଚାଲିଛନ୍ତି ଆସାମ୍—ଆସାମ୍ !—ନାଁରେ ମହୁଲି ମଦ ଅଛି । ସେଠି ନାହିଁ ଶିଙ୍ଗ ଶୁଧ ଟାଙ୍ଗର କନ୍ଦା । ଖାଲି ଡେଙ୍ଗା ଡେଙ୍ଗା ଠେଙ୍ଗାଧରା ଅଧିକାରୀ—ଆଉ ଜାତି ଜାତିକା ଶାଢ଼ୀ, ରଙ୍ଗ ରଙ୍ଗର ବ୍ଲାଉଜ—ଶୁଆଗୁଡ଼ିଆ, ଚଗଗୁଡ଼ିଆ, ବାଘଗୁଡ଼ିଆ—ଆଉ ପବନ ମୁଣ୍ଡରେ ଚାଲ ବାସ୍ନାରେ ଉଜନ, ଆଉ ମଦ, ପିମ୍ପା ପିମ୍ପା……

ଉଦାସ ଲାଗେ, ଭାବେ କେହି ନାହିଁ, ଯାହାକୁ ହାତ ଦେଖାଇ ହସି ହସି କହିଦେବ, ମୋର୍ ଅଣ୍ଡ୍ରା । ଏଟା, ମୋର୍ ଅଣ୍ଡ୍ରା ।

ମସିକ୍—ଛିଃ—ଥୁଃ—କେଡ଼େ ଅସନା ସେ, ମୁହଁଟା ତା'ର ଗୋଟା ନୁହେଁ ଫାଳେ । ଆଜି ଗୋରୁ ଚର୍ବି ନେସା ହେଇଛି ସତେକି ସବୁବେଳେ,—ଆଉ ଛାଲଟା ମଣିଷର ନୁହେଁ, ମଇଁଷିର ।

ସନ୍ତୋଷ୍‌କୁମାଷ୍ଟ ଝରଣାର ପାଣିରେ ଆପଣାର ମୁହଁ ଦେଖେ, ଆଖି ଉଜ୍ଜ୍ୱଳ ହୋଇଯାଏ—ପୁଣି ମନରେ ଆସେ ବିଦ୍ରୋହ। ସହରର ବି'ଭିନଆ ଅନୁଭୂତିକୁ ମନେକରି, ଯାହା ଖାଲି ପୋଡ଼ି ଜାଳି ମାରେ, ଯାହା ଭିତରେ ଆଉ ତା ଭିତରେ ଅସୁମାରି ବଣ ପର୍ବତ, ଆଉ ମସିଜ ସିମନ୍, ବେଜଆଁ ମଣି। ସେ ଅତୃପ୍ତ, ତେଣୁ ସେ ବହୁତୋମୁଖୀ।

ଏଇ ତା'ର ବିଶେଷତ୍ୱ, ଏଥିରେ ସେ ଦୁନିଆଁର ଯେତେ ସାରଆଦାନ୍ ଯେତେ ସାରଆଫୁଲ୍ ସମସ୍ତିଙ୍କଠୁଁ ପୃଥକ୍। ଠେଙ୍ଗାଜାନ ଦେଖେ, ମୁହୂର୍ତ୍ତିକୁ ମୁହୂର୍ତ୍ତି ସେ ନୂଆ, ଜଙ୍ଗଲ ଉପରେ ବନଗୋଟାକର ବେଳବେଳକର ଆଲୁଅର ରଙ୍ଗ ପରି।

ସବୁବେଳେ ସେ ସଜ।

ସେଦିନ ପହିଲାଦିନର ଦେଖା ପରଠାରୁ ସନ୍ତୋଷ୍‌କୁମାଷ୍ଟ ଆପଣାକୁ ସମ୍ଭାଳି ନେଲା। ଆଉ ସେ ନିଜକୁ ହଜାଇ ଦିଏ ନାହିଁ। ତେଣୁ ହଜାଇ ଦେଇଛି ଆପଣାକୁ ଠେଙ୍ଗାଜାନ। ତା'ର ପାଦ ଦୁମ୍ଭ ଦୁମୁ ପଡ଼େ, କାନ ଠିଆ ହୋଇଯାଏ, ଆଖି ଖିକ୍ଷଣିଭବେ ଖୋଜି ବୁଲେ, କେତେବେଳେ ସେ ଆସିବ, କୋଉଁ ବାଟେ ?

ସନ୍ତୋଷ୍‌କୁମାଷ୍ଟ ଆସି ଆସେ ନାହିଁ, ବାଟେ ବାଟେ ଗଲାବେଳେ ଥରେ ଅଧେ ଖାଲି ହସ। କେବେ କଦବା ଗାଡ଼ି ବାଟେ ଦେଖା, ଏତିକି, ଆଉ ବେଶୀ ନୁହେଁ !

ତେଣୁ ଠେଙ୍ଗାଜାନ ଦିନଯାକ ତାକୁ ସ୍ୱପ୍ନ ଦେଖେ, ରାତିଯାକ ତାକୁ ସ୍ୱପ୍ନ ଦେଖେ, ଧାଂଡ଼ା ବସାଘର ବିଷ ପରି ଲଗେ, ଦିନ ରାତି ସବୁବେଳେ ତା'ର ପ୍ରତୀକ୍ଷା।

ମୁହଁ ଫିଟାଇ ପଦାରେ କିଛି କହିବା ତା ପକ୍ଷରେ ଅତି ଅସମ୍ଭବ। ଏକେ ଅସ୍ୱାଭାବିକ, ତହିଁରେ ପୁଣି ତାଙ୍କ ଜାତି ଅଲଗା, ଉମ୍ ଆଉ ପର୍‌ଜା। ବାପ ଶୁଣିଲେ ଘର ଜାଳିଦେବ ମା ଶୁଣିଲେ ମୁଣ୍ଡ ପିଟିଦେବ। ସାହି ଲୋକେ ପଞ୍ଚାତି ବସାଇ ନିଷ୍ପତ୍ତି କରି ମାଗିବେ ମଦ କୁକୁଡ଼ା ଭୋଜି।

ପ୍ରଥମ ଅଭିଯାନ ପରେ ତାକୁ ଖାଲି ଛନ୍ଦ ଛନ୍ଦ ଲାଗିଲା । କଏ ଯେପରି କାନ ପାଖ ଶୁଣୁଛି ଲଟାରେ ବୁଟାରେ । କଏ ଯେପରି ଉଙ୍କି ଉଙ୍କି ଦେଖୁଛି, ସତେ ଯେପରି ଲୋକେ ଜାଣନ୍ତି, ଖାଲି ରହସ୍ୟ ଲଗାଇବାକୁ ଭୁନଟାନ ଅପେକ୍ଷା କରି ବସିଛନ୍ତି । ସବୁଥିରେ ତା'ର ସନ୍ଦେହ । ମନ ଗମ୍ଭୀରର ତଳେ ତଳେ ଖବର ଚେଉ ଡାଇ ଡାଇ ପିଟିହୁଏ । ଯେତେ ଲୁଚିହୁଏ ସେତେ ଫୁଲେ । ସନ୍ତୋଷକୁମାରୀର ସ୍ମୃତି ବଢ଼ି ବଢ଼ି ଘୋଟିଯାଏ ତା'ର ହୃଦ୍‌ବଳୟ, ଯେଣିକି ଚାହିଁଲେ ତେଣେ ଖାଲି ।

ଏତେ ଦିନକେ ଦଶଟା ଭିତରୁ ଗୋଟାଏ ଆଡ଼କୁ ମନ ତା'ର ଧାଇଁଛି । ଧାଇଁବା ହିଁ ସାର ହୁଏ । ଆଉ ଯେତେଟା ସ୍ମୃତି, ସବୁ ସଚେତକ ଗଡ଼ ଯାଉଥିବା ଝରଣାର ଦୁଇକୂଳରେ ଥିବା ଫୁଲ ଗଛ, ଲମ୍ବ ବେଣୀ ଝୁଲାଇ ସୁନାଖି, ନାଲି ଟୋପା ଟୋପା ଧାଡ଼ିକ, ଧୋବଧାଉଳିଆ ପେଣ୍ଡି ଫୁଲ ।

ସାରିଆଦାନ୍ କୋଳି ଅଣ୍ଟିରେ ପୂରେଇ ପରିଷ୍କାର ଆଖିରେ ତା ଆଡ଼କୁ ଅନାଇଁ ହସେ । ଠେଙ୍ଗାଜାନ ଦବଯାଏ ନାହିଁ, ସିଧା ହୋଇ ଚାହେଁ । ହସି ହସି କୋଳିଗଛର କଣ୍ଟାଡ଼ାଳକୁ ହାତରେ ଉଟାରି ଧରି କୋଳି ଛିଣ୍ଡାଇ ସାରିଆଦାନ୍ ଅଣ୍ଟିରେ ଦିଏ । ଥଣ୍ଟା କଥାର ଥଣ୍ଟା ଉତ୍ତର ଦିଏ । ତା'ର ଝକ ଝକ ଜୂଡ଼ା ଉପରେ ଦୃଷ୍ଟି ଉଭା ଦେଇ ମନଟା ବେଳେ ବେଳେ ତରଳ ଆସିଲେ ବେଶୀ ତରଳିଯାଏ ନାହିଁ । ସିଟି ମାରି ମାରି ଘରକୁ ଫେରେ ।

ଧାଂଡ଼ା ବସାଘରେ ଥରିଲା ଥରିଲା ଗଳାରେ ଗୀତର ଉତ୍ତର ଦିଏ । ସ୍ୱର ଚୁଇଁ ଚୁଇଁଆ ଶୁଭେ, କମ୍ପିଯାଏ ନାହିଁ ।

କନ୍ତୁ ହସ ମଝିରେ ଅଟକ ରହ ବେଳେ ବେଳେ ଅନ୍ୟମନସ୍କ ହୋଇଯାଏ । ଶୀଘ୍ର ନିଦ ଆସେ । ପୁଣି ଶୀଘ୍ର ନିଦ ଭାଙ୍ଗିଯାଏ । ବାହାରର ଅନ୍ଧାର ଆଲୁଅକୁ ଚାହିଁ ଚାହିଁ ଆଖି ଟାଣି ହୋଇ ହୋଇ କ୍ଳାନ୍ତ ହୋଇ ପଡ଼େ । ପୁଣି ବେଶୀ ନିଦ ହୁଏ । ସମସ୍ତିଙ୍କଠୁଁ ଡେରିରେ ଉଠେ ।

ଆଜ ବେଳେବେଳେ, ଦାଦବୁଢ଼ା ପାଖେ ଯାଇ ମୁଣ୍ଡିଆଟିଏ ମାରେ । ଚଉଁରେ ମନ ଉଶ୍ବାସ ଲାଗେ । ଗୁମ୍ ହୋଇ ବସି ପଡ଼େ ଦାଦ-ବୁଢ଼ା ଥୁଣ୍ଟା ଆଗରେ । ସ୍ୱରଆଡ଼ ଶୂନ୍‌ଶାନ୍ ।

—୪—

ସେ ଦିନ ରାମ ନାଇକ ଓ ତା'ର ସ୍ତ୍ରୀ ଦୁହିଁଙ୍କର ଲାଗିଗଲା ଝଟାପଟା । ଠେଙ୍ଗାର ବୋଉ କହିଲା, ମୋର ଗୋଟିଏ ବୋଲି ପୁଅ, ଆସି ଭେଣ୍ଡାଟିଏ ହେଲାଣି, ତା'ର ବାହାଘର ପାଇଁ ତୁମେ ମନ ଦଉନା ମୋଟେ । କ'ଣ ତୁମର ଅଭାବ ? ଖୋଲା ଟଙ୍କା ଯୋଗାଡ଼ କରିବାକୁ ଆଜି ଲୋକଙ୍କ ଘର ଖୋଜି ଯିବାକୁ ପଡ଼ବ ନାହିଁ ତ ତାକୁ ।

ନାଇକ କହିଲା, ଖୋଲା ଦେବାକୁ ମୁଁ କ'ଣ ମନା କରିଛି କେବେ ? ପିଲାର ଇଚ୍ଛା ଯେବେ ହେବ ସିନା, ମୁଁ କ'ଣ କରିବ ?

ଠେଙ୍ଗାବୋଉ କହିଲା, ତୁମର ଘର କ'ଣ ସବୁ ପିଲା ହୋଇଛନ୍ତି ଜଗତଯାକ ? ତୁମେ ସିନା ମଡେ ମୁହଁରେ ଲୁଗା ଦେଇ ଟେକି ନେଇ ଆସି ବାହା ହେଲ, ଉଦୁଲିଆ ବାହା । ସମସ୍ତେ କ'ଣ ସେତିକି ବେହିଆ ହୋଇ ଉଦୁଲିଆ ବାହା ହୋଇଛନ୍ତି, ନୋହିଲେ ନାହିଁ ?

ରାମ ନାଇକ କହିଲା, ସେପରି ଯଦି ଭାବୁଛ ଆଜି ତାକୁ ବାହାକର, ସେ ଯେଉଁଠି କହିବ ସେଇଠି ।

ଠେଙ୍ଗାବୋଉ କହିଲା, ହଁ ବୁଝିଚି ବୁଝିଚି, ହାତରୁ ଖୋଲା ଟଙ୍କା ସରିଯାଉଛି କିନା, ପୁଣି ପୁଅ ବାହାହେଲେ ଗାଁରେ ମଞ୍ଚା ଉପରେ ଚଢ଼ି ତୁମର ଷୋଡରେ ପାଣ ଜଗିବସିବ କିଏ ? ସେଥିପାଇଁ ଏତେ ଫିକର ତୁମର, ମୋର ଗୋଟିଏ ବୋଲି ପୁଅ—

ରାମ ନାଇକ ଭାରି ରାଗିଗଲା । ଜାଣେ ତା'ର ସ୍ତ୍ରୀ ଭାରି ଅବୁଝା-ମଣା । ତଥାପି ତା'ର ଭଲ କଥାରେ ଟିପ୍ପଣୀ ଦେଲେ ତା'ର ହାଡ଼ ଜଳେ । ବିଶେଷତଃ ତା'ର ଆପଣାର ବାହା କଥାକୁ ଉଲ୍ଲେଖ କଲେ । ସତ, ସେ ଉଦୁଲିଆ ବାହା ହୋଇଥିଲା । ପୂର୍ବରୁ କନିଆଁକୁ ମନେଇ ଦିନେ ବାହୁ-

ଦୁଇ ତିନ ଜଣ ଯେମିତ ପଦ୍ଧତି ଅତି ପ୍ରାଚୀନ ପଦ୍ଧତି ଅନୁସାରେ କନ୍ୟା ମୁହଁରେ ଲୁଗା ଗୁଞ୍ଜି ଦେଇ ଶୂନ୍ୟେ ଶୂନ୍ୟେ ତାକୁ ଟେକିକରି ଆଣିବାକୁ ହୁଏ । ଘରେ ଆଣି ପାଞ୍ଚ ଦଶଜଣଙ୍କୁ ଡାକି ଗ୍ରେଟ ଖେଳାଟିଏ ଦେଇ ବନା ଘୁମୁଡ଼ିଆ ବନା ଢୋଲ ମହୁରୀରେ ଡାଲି ଘରରେ ଖାଲି ସାନ ବଗଟିଏ କରି ନେବାକୁ ପଡ଼େ । ତା'ପରେ ଖୋଜ ଖୋଜକା ଆସେ କନ୍ୟାର ବାପ । ପାଞ୍ଚ ସାତକୁ ବସେଇ ପଞ୍ଚାତି କରେ । ସାମାନ୍ୟ ଖୋଲ ଟଙ୍କାରେ ସବୁ ମେଣ୍ଟିଯାଏ । ସେ ଏକା କାହିଁକି, ଏପରି ବିବାହ ଅନେକ ଗରିବ ଲୋକ କରିଥାନ୍ତି । ସେଥିନୁ ବର୍ତ୍ତମାନକୁ ବହୁଦିନ ଗଡ଼ିଯାଇ ସାରିଲାଣି,କିନ୍ତୁ ତା'ର ସ୍ତ୍ରୀର କ୍ଷୋଭ ଯାଇନାହିଁ, ସେ ଉଦୁଲିଆ ବିଭା ହୋଇଛି । ଆଜି କାଲିକେ ପଦରିକେ ସେଇଥି କଥାକୁ ସେ ପଟିଆରି ଦେଖାଇ ଖେଣ୍ଟାମାରେ, ଯେପରି ମରମକୁ ବାଧିବ, ସେ ଚିଡ଼ିବ ।

ସକାଳୁ ସେ କିଛି ଖାଇ ନାହିଁ, ଘରୁ ବାହାରି ଯାଇଛି । ପରିଜା ପେଜ୍ ବେଳା ଦିନ ବାର ଘଣ୍ଟା ଗଡ଼ିଗଲା । ସେ କ୍ଷେତରୁ ବାହୁଡ଼ିଲା ନାହିଁ । ନୂଆ ଜମି ଖଣ୍ଡେ ସେ ମରାମତି କରି ବାହାର କରୁଛି, ଖୋଲକୁ ଠାଏ ଚଉଡ଼ା କରି ଅଚଡ଼କୁ ହାଣି । ହାଣି ହାଣି ସେ ରାଗ ପାଶୋରି ପକାଇଛି । କେବଳ ଉଦ୍ଦେଶ୍ୟ ରହିଲାଣି ଦରିଦ୍ର ଝରଣା ଉପରେ, ଆଡ଼ରେ ହ'ଠା ବନ୍ଧ ପକାଇଦେଲେ ଜମେ ପଟି ପଡ଼ିଯିବ । ଆଉ ବର୍ଷକୁ ଦୁଏତ ସେଠି ଗୁଡ଼ିଏ ଉଚ୍ଚରେ ଧାନ ହେବ । ଭାବି ଭାବି ସେ ବୁଦ୍ଧି ଖେଳଉଛି କେତେ ହାଣ୍ଡି ମଦ ରାନ୍ଧିଲେ ଟୋପିଏ ଟୋପିଏ ଦେଇ ମୁଲିଆଙ୍କୁ ସେ ମଜୁରି ଖଟେଇବ । ଏମାନେ ପଇସାଠୁଁ ମଦ ଟୋପାକ ବେଶୀ ଚାହାନ୍ତି । କେତେ ଓସାରରେ ବନ୍ଧ ପଡ଼ିବ, କେତେ ଆଗାମୀରେ କ୍ଷେତ ବାହାରିବ ।

ଖୋଲ ବିପାଖେ ଜଙ୍ଗଲ ଉଚ୍ଚ ବଢ଼ିଛି କୁରଡ଼ିଶାଗ ବା ପର୍ଣ୍ଣ ଗଛ ଜାତି ଜାତିକା । ବେଳେ ବେଳେ କୋଡ଼ି ମୁନରେ କନ୍ଦା ମୂଳ ମେଞ୍ଚା ମେଞ୍ଚା ଉଠି ଆସୁଛି । ଭାବୁଛି ଘରକୁ ନେଇଯିବ । ମୂଳ ମିଠା ଲାଗେ ଖାଇବାକୁ । ବୁଢ଼ୀ କେଡ଼େ ସୁନ୍ଦର ମାଣ୍ଡିଆ ପେସା ଗଣ୍ଡିଏ ପକେଇ ଦେଇ ଘର ତାରଫ୍ ଖୋଜ କରେ ।

କିନ୍ତୁ ଖୋଲମରା ଖରାରେ ଝାଳ ଯେତିକି ତା'ର ଫିଟି ଯାଉଛି, ସେତିକି ଭୋକ ବଢ଼ୁଛି, ସେତିକି ବଢ଼ୁଛି ବୁଢ଼ୀ ଉପରେ ତା'ର ରାଗ ।

ବୁଢ଼ୀଟା କହୁ ବୁଝେ ନାହିଁ । ଖାଲି କହେ ବାପ ଅନେଇ ବସିଛୁ, ଗୋଟିଏ ବୋଲି ପୁଅ ତା'ର ଉଦୁଲିଆ ବଡ଼ ହେଉ । ସତେକି ବାପ ତାକୁ ଶିଖଉଚି ଉଦୁଲିଆ ବଡ଼ ହେବାକୁ ।

ଗଛ ଗୁଳରେ ବସି ବସି ରାମ ନାଇକ ପଶ ଖଡ଼ ଖଡ଼ ପାଣିର ସାଇଁ ସାଇଁ ଶୁଣିଲା । କାଠ ଖଣ୍ଡେ ରଖି ତା ଉପରେ ଶୁଖିଲ ଡାଳ ଖଣ୍ଡିକର ଅଗ ଲଗେଇ ଦିହାଚ ପାପୁଲିରେ ଡାଳକୁ ବଳ ବଳ ତା ମୁନରେ ନିଆଁ ଲଗେଇଲା । ପିକା ଟାଣିଲା । ରାଗି ରାଗି ବେଶୀ ବେଶୀ ଜୋରରେ ପିକା ଫୁଙ୍କିଲା, ଭାବିଲା, ନା ଅନ୍ତତଃ ବୁଢ଼ୀର ଗରବ ଭାଙ୍ଗିବାକୁ ନିଶ୍ଚୟ ସେ ଅତି ଶୀଘ୍ର ଠେଙ୍ଗାକୁ ବଡ଼ କରିବ । ଝୋଲା ଦେଇ ତିନି ଶ୍ବର୍‌କୋଡ଼ି ଟଙ୍କା । ଆଜି ତିନି କୋଡ଼ି ଟଙ୍କାର ଭୋଗା ।

ରାମ ନାଇକ ଭାବି ଭାବି ଏଣିକି ପ୍ରାଚୀନ ଘରଆଡ଼େ ଗ୍ଲଲିଲା । ପ୍ରାଚୀନ ଉମ୍ ଲୋକ, କଳୁ ପ୍ରାଚୀନ ବୁଧିଆ । ପ୍ରାଚୀନ ଦେଶ ବିଦେଶ ଦେଖିଛି । ସାହେବ୍ ଦେଖିଛି । କୋର୍ଟେ ଘର ଦେଖିଛି । ପ୍ରାଚୀନ ତାଠୁ ବୁଢ଼ା, ଖୁବ୍ ବୁଢ଼ା । କଥା ପଦେ ପଗ୍ଚରିଲେ ଧୀର ହୋଇ ଶୁଣେ । ଭାବି ଚିନ୍ତି ବାଟ ବତାଏ । ବଡ଼ ବଡ଼ କଥାରେ ନାଇକ ଲୁଚେଇ ଘେରେଇ ପ୍ରାଚୀନ୍‌ଠୁ ବୁଦ୍ଧି ନିଏ, କେହି ନ ଥିଲା ବେଳେ । ଲୋକ ଥିଲେ ଓଲଟି ପ୍ରାଚୀନ ସାଙ୍ଗେ ତର୍କ କରେ । ପ୍ରାଚୀନ୍‌ର କଥା ହସି ଉଡ଼େଇ ଦିଏ, ପୁଣି ନିଜର ଦିପଦ ମିଶେଇ ଦେଇ ଆପେ ସେହି କଥା ପଛେ କରେ । ସେ ଗାଁର ନାଇକ ।

ଭାବି ଭାବି ଗଲା, ଠେଙ୍ଗା ବୋଉ କେଡ଼େ ଆଶ୍ଚର୍ଯ୍ୟ ହେବ ପଛେ । ଆଁ କରି ଅନେଇଁ ରହିବ । ଆଉ ଦିନେ ମୁହଁ ଫିଟେଇବ ନାହିଁ । ଯେତେ ସେ ଯାହା ଖର୍ଚ୍ଚ କରିଛି ସବୁ ଡେଙ୍ଗାବୋଉ ହସି ଉଡ଼େଇ ଦେଇଚି । ସବୁ କଥାକୁ ଉଡ଼େଇଚି ବସି ତା'ର ଆପଣାର ଉଦୁଳିଆ ବଢ଼ିକଥା ପକେଇ । ସତେ କି ରାମ ନାଇକ ପଇସା ଖର୍ଚ୍ଚ କରିବାକୁ ସୁଖ ପାଏ ନାହିଁ । ଭାରି ଖଟିଟା (ଚପାଟା) ସେ···ସେ ଠେଙ୍ଗାବୋଉ ପୁଣି ଦେଖିବ, ପୁଅର ବିଭିଘରକୁ ଦଶଟା ବଡ଼-ବିଭାର ପଇସା ସାରିପାରେ କଲି ରାମ ଚନ୍ଦ୍ର ନାଇକ ।

ପ୍ରାଚୀନ୍ ପିଣ୍ଡାରେ ବସି ବସି ଖ୍ରୀଷ୍ଟାନ ଦଳ୍ ଶିସ୍ତ ଅସୁଲ୍ କରୁଥିଲା ଖଣ୍ଡେ କାଗଜରେ । ସେ ପ୍ରତି ଖ୍ରୀଷ୍ଟାନ୍‌ଠୁଁ ଦଳପିଚ୍ଛା ଚୁଆରଅଣା ଆଦାୟ କରେ । ତାଏ ପାଷ୍ଟରକୁ ଏକାଠି କରି । ପାଷ୍ଟର ପାଦ୍ରୀ ସାହେବକୁ ଦେଇଦିଏ । ସାହେବ ଖର୍ଚ୍ଚରେ ଲଗାଏ । ଗୀର୍ଜା ଘର ଚୂନ ହେବ । ପୂଜା ପାର୍ବଣରେ ଉତ୍ସବ ହେବ । କେତେ ଇସ୍କୁଲ ଅଛି । ଏତିକ ପଇସା କ'ଣ ଅଣ୍ଟିବ ? ତଥାପି, ଗୋଟାଏ ସାହା ତ, ଧରମକାରିଆ ଲୋକେ ଧର୍ମ ପାଇଁ ଏତକ ଦେବାକୁ ବାଧ୍ୟ ।

ପ୍ରାଚୀନ୍ ଅସୁଲ୍ କରୁଥାଏ । ପାଖରେ ଛୁଡ଼ା ହୋଇ, ଅଲେଇବଣିଆର ଝିଅ ସନ୍ତୋଷ୍‌କୁମାରୀ ଗୋଟିଏ ହାଣ୍ଡିରେ ସଡ଼ା ମାଣ୍ଡିଆ ପଲେ ଘୁଷୁରି ଛୁଆକୁ ଖୋଉଥାଏ । ନାଇକ ପହଞ୍ଚିଲା । ସେତେବେଳେ ଦୁଇଲାଠି ଉପରକୁ ସୂର୍ଯ୍ୟ ଉଠିଛି । ନାଇକ କହିଲା, ପ୍ରାଚୀନ୍ ! ମୁଁ ଠେଙ୍ଗାକୁ ବଭା ଦେବ । ପ୍ରାଚୀନ୍ କହିଲା, ସତକଥା, ଭଲହେବ । ପ୍ରାଚୀନ୍ କହିଲା, କନିଆଁ ଠିକ୍ କରିଛୁ ? ନାଇକ ହଠାତ୍ ଆକାଶରୁ ତଳକୁ ଖସିଲା । ସତେ ତ ! ବାଟଯାକ ସେ ବଡ଼ଘରର ଜାକ୍‌ଜମକ କଥା ହିଁ କେବଳ ଭାବୁଛି । କନିଆଁ କେଉଁଠୁ ଆଣିବ ସେଟା ଭାବ ନାହିଁ । ସାରିଆଦାନ୍ ମନେ ପଡ଼ିଲା, ତଥାପି ଟିକିଏ ବେପସନ୍ଦ ଲାଗିଲା, ଏଇ ଗାଁର କନିଆଁ ତ ! କହିଲା, ପ୍ରାଚୀନ୍, କନିଆଁ ତୁଇ ଠିକ୍ କର ।

ପ୍ରାଚୀନ୍ କହିଲା, ମୁଇଁ କପାଇଁ କରିବ, ଠେଙ୍ଗା ନଜେ ଠିକ୍ କରୁନାହିଁ କାହିଁକ ?

ନାଇକ କହିଲା, ନ କଲା ତା'ର ଇଚ୍ଛା, ସେଥିପାଇଁ କ'ଣ ମୁଇଁ ଅନେଇ ବସିଥିବ ?

ପ୍ରାଚୀନ୍ କହିଲା, ତୋର କନିଆଁ କେ ଠିକ୍ କରି ଦେଇଥିଲା, ତୋ ପାଇଁ ରେ—

ଉଭୟେ ହସି ପକେଇଲେ । ଅଳ୍ପ ଦୂରରେ ବସି ସନ୍ତୋଷ୍‌କୁମାରୀ ହସି ପକେଇଲା ।

ନାଇକ କହିଲା, ନାଇଁ ପ୍ରାଚୀନ୍, ତୁ ଜାଣି ନାହୁଁ, ଆଜ ତା'ର ମା' ମତେ ଯାହାକ କହୁଛି—ନାଇକ କହିଗଲା । ପ୍ରାଚୀନ ଆହୁରି ହସିଲା । ଶେଷରେ ପ୍ରାଚୀନ କହିଲା—ସାଉଆଦାନ୍ ?

ନାଇକ ଗୁମ୍ମାରି କହିଲ, ସେ ଅଛି ଯେ, ତୋ ଜଣାଶୁଣା ଆଜ ଯଦି କଏ ଥିବ ?

ପ୍ରାଚୀନ୍ କହିଲ, କପାଇଁ ଆଜ ବାବୁ ନଜର ଗାଁଓ ଘୁଡ଼ ଭନ୍-ଗାଏଁ ଭୁଇ ଖୋଜ ଯିବୁ—, ପୁଣି ଟିକଏ ଭାବ କହିଲ, ଆଛା, ସେ କଥା ଭାବବା ।

ସନ୍ତୋଷ୍କୁମାରୀ ବସି ବସି ଆଖି ମିଟି ମିଟି କଲ । ବଡ଼ ସୁନ୍ଦର ମୁହଁ ମାଡ଼ ଦେଇ ସବୁତକ ଖାଇ ପିଇ ଦେଲେ, ତୁଆଙ୍କୁ ଘଉଡ଼ ଦେଇ । ସନ୍ତୋଷ୍କୁମାରୀ ତେଣିକ ନଥା ଦେଇ ପାରଲ ନାହିଁ ।

ନାଇକ ଗଲ ଦଶାରି ପାଖକୁ । ଠେଙ୍ଗାବୋଉ ତାକୁ ଆଜ ଉଠେଇଛି । ଆଜ ସବୁ ସେ ନଷ୍ଟଭ୍ରି କରସାରି ତେବେ ଘରକୁ ଫେରବ ।

ଦଶାରି, ଠେଙ୍ଗାର ବହା ଦେବ ।

ଦେ ଦେ ନାଇକ, ଦେ ଦେ ।

ପାଗ ଯୋଗ ଭୁଇ ଦେଲେ ସିନା ?

ହଁ ଦେବ, ନାଇଁ ବୋଲବ ନାହିଁ । ଦଶାରି ମୁଣ୍ଡ ଟୁଙ୍ଗାରଲ । ପାଗର ଦନ ହେଲେ ସିନା, —ଏବେ ତ ହାଲ ମାଘ ମାସ ହୋଇଚ । ମାଘ ଯିବ, ଫାଗୁନ୍ ଯିବ, ଚଇତ ମାସ ନ ଆସିଲେ ପର୍ଜାର ବହା ନ ହୁଏ । ଚଇତ୍ ହେଉ ତା, ଆସ୍ବୁ ଦନେ । ପାଞ୍ଜି ଦେଖିକରି ଗୁରୁମାଇ ଡାକକରି ବହାର ଦନ ଧରି ଦେବ । ଆଗତାହୁଁ ନ ଭୁଇ ବବାର ଯୋଗାଡ଼ କର୍ । ଘର ବାନ୍ଧି ଧାନ ମାଣ୍ଡିଆ ସଙ୍ଗା—

ନାଇକ କହିଲ, ସେ ତ ହେବ, ଆଗ କନିଆଁ ଗୋଟେ ଠିକ୍ କରଦେ ତ ଦଶାରି ।

କନିଆଁ ! ଦଶାରିବୁଢ଼ା ଆଶ୍ଚର୍ଯ୍ୟ ହୋଇ ଗୁହିଁଲ । କନିଆଁ ମୁଇଁ ଠିକ୍ କରବାର କେଉଁରେ, କନିଆଁ ତ ଟୋକା ଆପେ ଠକ୍ କରବ । ମୁଇଁ

ପାଗ ଯୋଗ ଦେବ । ତୁଇ ବନ୍ଧ କରିବୁ । ମୁଇଁ ଭୋଜ ଭାତ ଖାଇବ । ମଦ୍ ପିଇବ । ଧାଂଡ଼ା ଧାଂଡ଼ୀ ପାଇଁ ଝାକର ଦେବତା ଦାଦବୁଢ଼ା ଦେବତା ପାଖେ କହିବ । ମୁଇଁ ଆଉ କସ୍ କରିବ ? ମୁଇଁ ଡୋକ୍‌ରାଟା ଅର୍ଥାତ୍ ବୁଢ଼ାଟା । ତୋର୍ ଦାଂଡ଼ା ନିମନ୍ତେ ମୁଇଁ କସ୍ କନିଆଁ ଠିକ୍ କରିବ—

ଦିଶାରିବୁଢ଼ା ଆଶ୍ଚର୍ଯ୍ୟ ହୋଇଗଲା । ଏ ଟୋକାଟୋକି ସମ୍ବନ୍ଧ କଥାରେ ତା'ର ଅଧିକାର ନାହିଁ । ତା'ର ଅଧିକାର ଠାକୁର ଦେବତା ଉପରେ । ନାଇକର ଏ ଆଶ୍ଚର୍ଯ୍ୟ ପ୍ରସ୍ତାବ ଶୁଣି ତା'ର ବିସ୍ମୟର ସୀମା ରହିଲା ନାହିଁ । ସେ ଗମ୍ଭୀରଲୋକ । ବେଶୀ କହେ ନାହିଁ । ତା'ର ମୂକ ଠାକୁର ତାକୁ ମୂକ କରିଦେଇଛି । କିନ୍ତୁ ବଡ଼ ଅସଙ୍ଗତ ଏ ପ୍ରସ୍ତାବ । ଆଉ ବଡ଼ ଅସମ୍ଭବ, କାରଣ ପାହାଡ଼ୀ ଜାତିର ଇତିହାସରେ ଧାଂଡ଼ା ଛଡ଼ା ଆଉ କଏ ପୁଣି ଧାଂଡ଼ୀ ଠିକ୍ କରିବ । ହିନେ କାଳେ ଶୁଣାଗୁଣା ନାହିଁ ।

ଭାବିଲା, ନାଇକ ଥଟ୍ଟା କରୁଛି କି ତାକୁ ।

ଥଟ୍ଟା ତାକୁ ଭଲ ଲାଗେ ନାହିଁ । ସବୁବେଳେ ସେ କାମର କଥା ବୁଝେ । ନବଜ ନକଲର ଦିନ ତା'ର ବହୁଦିନୁଁ ଚାଲି ଯାଇଛି । ସେ ଆଜକୁ ଚାଳିଶ ପଚାଶ ବର୍ଷର କଥାହେବ । ଟଙ୍କା ଅଭାବରୁ ଆପଣାର ବିବାହ ଲାଗି ଝୋଲାଟଙ୍କା ସେ ଯୋଗାଡ଼ କରି ନ ପାରି ଶେଷରେ ଶଶୁର-ଘରେ ଚାରିବର୍ଷ ଗୋତି ଖଟିଲା, ହି'କୋଡ଼ି ଟଙ୍କା ଲାଗି, କନିଆଁ ନାଁ ଥିଲା ମଙ୍ଗ୍‌ଲ । ବର୍ଷକ ଭିତରେ ତିନିଶହ ଷାଠିଏ ଦିନ ମଙ୍ଗ୍‌ଲ ସାଙ୍ଗେ ଦେଖା ହେଉଥିଲେ ସୁଦ୍ଧା କୌଳିକ ପ୍ରଥାକୁ ମୁଣ୍ଡରେ ବୋହି ଟଙ୍କା ଶୁଝିବାର ଚାରିବର୍ଷ ନ ଶୁଝିବା ପର୍ଯ୍ୟନ୍ତ କେବେ ସେମାନେ ଆଡ଼ ଆଖିରେ ଚାହିଁ ନାହାନ୍ତି ପରସ୍ପରକୁ । ସେତେବେଳେ ସେହିପରି କଡ଼ା ଆଇନ୍ ଥିଲା । ମଣିଷର ଆଣ୍ଠ ଟାଣ ଥିଲା । ଅଣ୍ଟାରେ ଜୋର୍ ଥିଲା ।

ତା'ପରେ କମ୍‌ଲ ଆସିଥିଲା । ପାଞ୍ଚଟା ବର୍ଷ ମୋଟେ । ତିନିବର୍ଷର ପୁଅ ଝାଲିଆକୁ ଛାଡ଼ି ଦେଇ କମ୍‌ଲ ଜ୍ୱରରୋଗରେ ପଡ଼ି ପଡ଼ି ଶେଷରେ ଛାଡ଼ି ଚାଲିଗଲା । ଝାଲିଆକୁ କୁଣ୍ଢେଇ ଧରି ପୁଣି ଗଲା ଦଶଟା ବର୍ଷ । ପୁଣି ସେଥିର, ଏଇ ଶୀତଦିନେ ଥରେ ବଡ଼ଦାଦା ତାକୁ ଓଟାରି ନେଇଗଲା ।

ତା'ପରେ ବୁଢ଼ା ଦିଶାରି କେଭେଁ ହସିନାହିଁ ।

ଗହଳ ଆଖିପତା ଭିତୁଆଳରୁ କଣେଇ କଣେଇ ଦଶାର ନାଇକକୁ ଅନେଇଁଲ୍ଲା—

ମୁଇଁ କସ୍ କନିଆଁ ଠିକ୍ କରି ଦେବରେ ନାଇକ ?—

ନାଇରେ, ତୋର ଇଷ୍ଟ (ଅର୍ଥାତ୍ ଇଚ୍ଛା) ତୋର ଖୁସି ମୁଇଁ ନ' ପାର୍‌ଲ (ପାରିଲ ନାହିଁ) । ଯୋଗ ପାଗ ଦେଖି ଯେଉଁଠି ହେଲେ କନିଆଁ ଠିକ୍ କରିଦେ—

ପୋ'କୁ ପଚ୍ଚର୍; ଯାକେ କହିବ ତାକେ ମାଗ୍ ।
ପୋ' କହିବ ମୋକେ କସ୍ ଜଣା—ଆଉ୍ ସେ ?
ଦଶାର ଗମ୍ଭୀର ହୋଇ କହିଲା, ପଚ୍ଚର ଦେଖ୍ ।

ନାଇକ ଭାବିଲା, ବାହାରିଛି ଯେତେବେଳେ, ନିଶ୍ଚୟ ଗୋଟାଏ କନ୍ଥ ଠିକ୍ କରି ଯିବ । କ'ଣ ମନକରି ଦାଦବୁଢ଼ା ପାଖକୁ ଗଲା । ଭୂଇଁରେ ପଡ଼ି ଦଣ୍ଡବତ ହୋଇ କହିଲା ଦାଦବୁଢ଼ା, ମୋର ପୋ' ପାଇଁ କନିଆଁ ଗୋଟେ ଭୁ କରି ଦେ—

ତଳେ ବସ୍ତି, ଉପରେ ମୁଣ୍ଡିଆ, ଘୁଇଁଘୁଇଁଆ ଖରାରେ ସବୁ ନିର୍ଜୀବ ଦିଶୁଛି । କଠୋର ଦିଶୁଛି ଘରପାଖର ନେଳ ପାହାଡ଼ର ବେଢ଼ । ସାତବେଣ୍ଟିଆ ଖଜୁରି ଗୁଣ୍ଡା ଆଗରେ ଲମ୍ବ ହୋଇ ଶୋଇ ରହି ରାମଚନ୍ଦ୍ର ନାଇକ ମନେ ମନେ ଶାନ୍ତି ପାଇଲା ।

ଦାଦବୁଢ଼ାକୁ ସେ କହିଛି ।

ଘରକୁ ଫେରିଲା, କିନ୍ତୁ କାହାକୁ ବୋହୂ କରିବ ଠିକଣା ହେଲା ନାହିଁ । ଠେଙ୍ଗାକୁ ଯେତେଥର ସେ ବା ତା'ର ବୋଉ ପଚ୍ଚରିଛି, ଠେଙ୍ଗା ଉତ୍ତର ଦେଇଛି ଯେ ସେ ଜାଣେ ନାହିଁ, ସେ କହିପାରି ନାହିଁ ବା ଭଲକରି ବୁଝି ଦେଖିନାହିଁ । ଏହିପରି ଗୋଟାଏ କଥା, ସାରିଆଦାନ୍ କଥା ତା'ର ମନରେ ଆଇଲା । ପୁଣି ଭାବିଲା ଦଶପାଞ୍ଚ ଜାଗା ଦେଖିଥିବା ଭଲ । ଜାନି ବେଶୀ ଝୋଲ ହାଙ୍କିପାରେ । ଆଜ ସାରିଆଦାନ୍ ଗାଁର ଝିଅ, କାଲେ କଏ ମିଳିବେ ତା'ଠୁ ଭଲ ।

ସେଥିପାଇଁ ଠେଙ୍ଗାର ବୋହୂ ରହିବାପାଇଁ ଗ୍ରାମ ନାଇକ ଆରମ୍ଭ କଲା ଗୋଟିଏ ନୂଆଘର, ଠିକ୍ ନଜର ଘରକୁ ଲାଗି ।

ଘର କ୍ରମେ ବଢ଼ି ଉଠିଲା ।

ବୋହୂ ଠିକ୍ ହେଲା ନାହିଁ ।

ଗାଁରେ ଚହଳ ପଡ଼ିଗଲା, ନାଇକ ବୋହୂ ଖୋଜୁଛି । କାରଣ ଅକାରଣରେ ଦାଦବୁଢ଼ା ପାଖେ ବଳ ପଡ଼ିଲା ଅନର୍ଥ୍ୟାପ, ଫୁଲ ଗଦାହେଲା, ମଦ ଢଳା ହେଲା, ଜାଣ ଦାଦବୁଢ଼ାକୁ ଗୋଟିଏ ନୂଆ କନା ଦେଲା, ମୁଣ୍ଡରେ ବାନ୍ଧିବାକୁ—

ଲୋକେ ବୁଝିଲେ, ଭରସି କେହି କହିଲେ ନାହିଁ କିଛି ।

—୭—

ଠେଙ୍ଗାଜାନ ବ୍ୟସ୍ତ ହୋଇ ପଡ଼ିଲା ।

ସେହି ସନ୍ତୋଷ୍‌କୁମାରୀ, ଯେତେ ଦେଖିଲେ ସେ ସେତେ ଆଖିଦରଶା ହୁଏ, ଆଶା ମେଣ୍ଟେ ନାହିଁ, ସେ ସବୁଦିନେ ନୂଆ । କିନ୍ତୁ ସେ କଡ ପଶେ ନାହିଁ, ଦୂରରୁ ଥାଇ ଖେଳେ । ଦେଖା ହେଲେ ହସି ଦେଇ ଖସିଯାଏ, ଠେଙ୍ଗାର ଛାତି ଦମଦମ ପଡ଼େ । କିଛି ନା କିଛି ବାହାନା ଖୋଜି ସେ ପଛେ ପଛେ ଧାଏଁ, କିନ୍ତୁ ପାଏ ନାହିଁ ।

ଧାଂଙ୍ଗା ବସାଘରେ ତା'ର ଆସନ୍ତା ବାହାଘର କଥା ପକେଇ ସାଙ୍ଗମାନେ ଯେତେବେଳେ ତାକୁ ଥଟ୍ଟା କରନ୍ତି, ମନେ ମନେ ତା'ର ଛାତିରେ ଲୁଣି ଖସିଯାଏ । ଘର ଗରମ ଲାଗେ । ଧାଂଙ୍ଗୀ ବସାଘରର ଗୀତ ଗୋଳମାଳ ପରି ଲାଗେ । ପଦାକୁ ସେ କୋଡ଼ିଏ ଥର ବାହାରି ଆସି ପୁଣି କୋଡ଼ିଏ ଥର ଘରଭିତରେ ଯାଇ ଶୁଏ ।

ମନ ମାନେ ନାହିଁ ।

ପୁଣି ବେଳେବେଳେ ମନ ନରମ ହୋଇ ଆସେ । ସନ୍ତୋଷ୍‌କୁମାରୀକୁ ଭୁଲି ହୁଏ । ପାନଗାଛ ବାଟେ ଗଲାବେଳେ ପାଦ ଧୀରି ଧୀରି ପଡ଼େ ।

ପାଣି କୂଳରେ ଯାତପାଞ୍ଚ ଘର ସେ ଅଟକ ଠିଆ ହୁଏ । ଧନେ ଦୁଇ ଧନ ଏହିପରି କଟେ । ଗୋଟାଏ ମୋହରେ । ତା’ପରେ କେଉଁ ଛଟକରେ ସନ୍ତୋଷକୁମାରୀକୁ ସେ ଦେଖ ପାଏ । ମୂରୁକ ମୂରୁକ ହସି ଦେଇ ଆଖି କଣରେ ଅନେଇଁ ଅନେଇଁ ସନ୍ତୋଷକୁମାରୀ ପଛ ବୁଲେଇ ଦେଇ ଚାଲିଯାଏ । ମଇଁଷି ପରି ଅକାବକା ହୋଇ ଠେଙ୍ଗାଜାନ ତୁଛାଟାକୁ ଶୂନ୍ୟକୁ ଅନେଇଁ ଠିଆ ହୋଇଯାଏ ।

ମନର ଧନ କୋଡ଼ହଣା ଝାଳରେ ଧ ଧୋଇ ହୁଏ ନାହିଁ ।

ଉଦାସିଆ ଜହ୍ନରାତିଟା । ଧାଂଡ଼ା ବସାଘର ସାମ୍ନାରେ ଥିବା ଗୋଟିଏ ପଥର ଚଟାଣ ଉପରେ ଠେଙ୍ଗାଜାନ ବସିଥାଏ । ପଛପଟେ ବଡ଼ ବରଗଛ । ସାମ୍ନାକୁ ଭୂଇଁ ଢାଲୁ ହୋଇ ହମେ ତଳକୁ ଗଡ଼ିପଡ଼ିଛି । ଏଇ ଗଡ଼ାଣିରେ ତଳର ବସ୍ତି, ଢାଲୁରେ ଲୁଚିଯାଇଛି, ଖାଲ ଧଶୁଛି ସବୁଆ ଗ୍ରାମ୍ଟି । ଡାହାଣ ପାଖେ ଦୁଇରୁଣିଟା ଘର, ବାଁ ପାଖେ ଘରର ଛାତ ଓ ତା ସେ ପାଖକୁ ଖାଲଟା, ଏଠି ସେଠି ଗୋଟାଏ ଗୋଟାଏ ଗଛ ଓ ମୁସନ୍ ନଈକୂଳର ଅନ୍ଧାର ଗଛର ଗହଳ ବାଡ଼ । ଏଠି ବସି ଦୂରର କ୍ଷେତ ସୁନ୍ଦର ଦେଖିହୁଏ, ଖାଲରେ ଅଛି, କେତେ ପାତାଳରେ ଓ ତା ସେପାଖକୁ ଲୁଣ୍ଠା ଗାଁର ଗୋଳେଇ ଘେରା ପାହାଡ଼ ।

କୁହୁଡ଼ିଆ ଜହ୍ନରାତିରେ ଖାଲ୍ ଭିତରେ ଆଲୁଅର ସମୁଦ୍ର ସୃଷ୍ଟି ହୋଇଛି । ଚହିଁରେ ଭାସିଲା ପରି ଏଠି ସେଠି ଝିଲ୍‌ମିଲିଆ ଛାଇ, ଛୋଟ ବଡ଼ ହୋଇ ଅସଂଖ୍ୟ ।

ପାହାଡ଼ ଉପରେ ଗୋଲ୍ ହୋଇ ଜହ୍ନ ଉଇଁଛି, ପାହାଡ଼ୀ ଦେଶର ହସ ହସ ପରିଷ୍କାର ଜହ୍ନ ।

ଠେଙ୍ଗାଜାନ ଏକୁଟିଆ ବସିଥାଏ । ଘୁରଆଡ଼ ଶୂନ୍‌ଶାନ୍ । ପଛରୁ ଧାଂଡ଼ା ବସାଘରୁ ଖାଲ ଘୁଡୁଡ଼ ଉଠୁଥାଏ ଗୋଟାକୁ ଗୋଟା, ହୁଁ ହାଁ ଚଂଡ଼ଇର ବୋବାଳ ପରି ।

ଏଠି ସେଠି ଗାଁଦାଣ୍ଡର ଗୋଳଆ ଚଟା ପଥର । ପୁରୁଷ ପୁରୁଷ ଏଇ ଗାଁର ଲୋକେ ସତେକ ପଥର ପାଲଟି ଗଛର ଛାଇ ତଳେ ବନ୍ଦ ଯାଇଛନ୍ତି ।

କେହି ଚେଇଁ ନାହାଁନ୍ତି । ସବୁ ନିସ୍ତବ୍‌ଧ ।

ଠେଙ୍ଗାଜାନି ସାମ୍ନାକୁ ମୁହାଁକରି ବସି ଭାବୁଛି । କୋଳରେ ତା'ର ପୁରୁଣା ଲଠି ଖଣ୍ଡି ଡେଙ୍ଗା ହୋଇ ପଡ଼ି ରହିଛି । ତା'ର ଭାବନାର ଜିନଜଲ ନାହିଁ । କେବଳ ପରିସ୍ଥିତିର ରାଗିଣୀ ତା'ର ମନକୁ ଆଶ୍ରାକରି ଆପେ ଆପେ ବାଜି ଯାଉଛି, ଠେଙ୍ଗାଜାନି ଚେଇଁ ଚେଇଁ ଶୋଇ ଶୁଣୁଛି ।

ଏଇ ଜମିଆଁ କଷ୍ଟ ରାତିରେ ।

କଏ କେତେ ଏହି ଦାଣ୍ଡରେ ନାଚକୁଦ ଗଲେ । ପାଦର ଧୂଳି ଏକାଠି ହୋଇଛି । ହୃଦୟର କଥା ଏକାଠି ହୋଇଛି କି ? କନ୍ଧା ଖୋଲି ମାଣ୍ଡିଆ ଜାଉ ମନ୍ଦଏ ଲେଖାଁ ପିଇ କଉପୁନି ପିନ୍ଧି ମଣିଷ ଓ ପ୍ରକୃତିର ଅନାଦର ଓ ଶତ୍ରୁତା ଭିତରେ ସେମାନେ ଆପଣାର ଘ୍ରୋଟ ଘରକରଣା ସାରିଦେଇ ଚାଲିଗଲେ । ଆଜି ଦାଣ୍ଡ ଶୂନ୍‌ଶାନ୍‌ । ତାଙ୍କର ଇତିହାସ କେହି ଲେଖି ନାହିଁ, ତାଙ୍କର ସ୍ମାରକ, ପଥର ଦେଶର ଏଇ ଗୋଜିଆ ଚଟା ପଥର ।

କାହାର କେତେ ମନର କଥା ଅକୁହା ରହିଗଲା । କାହାର ଗୁପ୍ତ-ବେଦନା ମଣିଷ-ରୂପର କାରାଗାର ଭିତରେ ଜୀବନ ଜୀବନ ବନ୍ଦୀ ହୋଇ ରହି ଶେଷରେ ସତ୍ତା ହଜାଇଲା । କେଉଁ ଦୁଇ ହୃଦୟ ପରସ୍ପରକୁ ଚିହ୍ନି ନ ପାରି ପାଖେ ପାଖେ ଥାଇ ଏଣେ ତେଣେ ଖାଲି ଖୋଜି ବୁଲିଲେ । ତା'ର ଖୋଜିବା ହିଁ ସାର ହେଲା ।

ଖରାର ଝାଞ୍ଜି, ବରଷାର ହୃଦୟ-ଦୁହାଁ ଧାର, ବାଆବତାସିର ଓଲଟପାଲଟ, ସବୁ ଅଙ୍ଗେ ନିଭେଇ ବଣର ମଣିଷ ଗୁଡ଼ ଦେଇଗଲା ଖାଲି ଗୋଜିଆ ପଥର ଆଜି ଚଟାପଥର, ତା'ର ପ୍ରତୀକ କରି ।

ଅଜ ଏଇ ନିସ୍ତବ୍ଧିଆ ଗାଁ ଦାଣ୍ଡରେ ସବୁ ହାତ ପିଟା ଗୋଡ଼ ପିଟାର ଯେପରି ଶେଷ ସମାଧାନ ହୋଇଯାଇଛି, ଆଜି ସବୁ ପଥର କଟିକେ-କଟି ଲାଗି ପଡ଼ିଛି, ଶେଷ ଅବସାନର ଦିନକୁ ଚାହିଁ । ମୁହଁରେ କଥା ନାହିଁ ସତ, ହୃଦୟରେ କିନ୍ତୁ ଗାଣ୍ଠି ନାହିଁ, କ୍ଳେଶ ନାହିଁ, କ୍ଷୋଭ ନାହିଁ ।

ମଣିଷ ମଣିଷେ ଯେତେବେ ହୃଦରେ ହୃଦ ଭିଡ଼ି ମିଶିପାରିଲା ନାହିଁ, ମିଶିଲା ପଥର, ଗୋଜା ପଥରକୁ ଚଟାପଥର, ମିଶିବା ସମ୍ଭବ ହେଲା ପଥର

ପାଲଟି ସାରଲା ପରେ । ଯେତେବେଳେ ଗୁଡ ନାଚ ଉଠିବ ନାହିଁ, ଧୁମ ଟାକୁର ଉଠିବ ନାହିଁ, ଆଖି ମୁଦ ହୋଇ ଆସିବ ନାହିଁ, ନବାକ୍ ନିଷ୍ଟଳ, ପଥରକୁ ପଥର । ଫସାରଟା ପସ୍ ଧୋବାଭୁଠ ପରି, ଯେଉଁଠି ନିତି ନୂଆ ଲୁଗା କଚ୍ଛୁଏ, ଆଜର ଲୁଗା କାଲକୁ ନାହିଁ, ଲୁଗାର ଅନ୍ତର କଳୁଷ କଳୁଷ ଆଉ ବାହାର ଯେତେ ଉଡ଼ା ଧୂଳ, ଦାଗ ଆଉ କାଳ ସବୁ ସଫାହୋଇ ପାଣିରେ ମିଶି ଦୂରକୁ ଭସିଯାଏ । ଫସାରକୁ ଆସିବା । ଖାଲି ଲୁଗା ଧୋବାଭୁଠକୁ ଆସିଲା ପରି, ପିଟିହୋଇ କଚ୍ଛିହୋଇ ସବୁ ଯାଇ ନିଜେ ସଫା ହେବାକୁ ପୁଣି ଆଜ ଆସି କାଲ ଚ୍ଛଲିଯିବାକୁ ।

ଏଇ ନଚ୍ଛଟିଆ ସ୍ତରେ ନିଶବଦ ନିଘେଳାରେ ସତେ ଯେପରି ଠେଙ୍ଗାଜାନ ଆଖି ଆଗରେ କଇପୁମା ପିନ୍ଧା କାଉଡ଼ ବୁହା, ପେଂଗ ପରଜା ପୂର୍ବପୁରୁଷଙ୍କ ମୂର୍ତ୍ତି ଗୋଜାପଥର ଗୁଡ଼ି ଚଟାପଥର ଗୁଡ଼ି ଗୁଇ ପରି ବାହାରି ଆସିଲେ, ଗୁପି ଗୁପିକା ଗଛର ଗୁଇରେ ହାତ ଧଗ୍ ଧରି ହୋଇ ଗୀତ ବୋଲଲେ ।

ସୁଡ଼ା ସୁଡ଼ା (ଶୁଣ ଶୁଣ) ସୁଡ଼ଆ ଗୋଡ଼
ଓ୍ୱେନା ଓ୍ୱେନା (ଶୁଣ ଶୁଣ) ସରସା ଗୋଡ଼,
ଶୋଏ ଦନ୍‌ପିଁ ଦନେଁ (ଶହେ ଦିନରୁ ଦିନଟିଏ)
ବାରେ ମାସ୍‌ଠାଁମାସେ (ବାରମାସରେ ମାସଟିଏ ଆଜ)
ଜୁଡ଼ଗୁଡ଼ (ଆମେ ଦୁହେଁ) ମିହା ଆଚାହ୍ଲା (ମିଶିଅଛୁଁ)
ଇପରୁ ଦାଦର ଜାଗାତୋ (ଏହିପରୁ ଆମ ପୂର୍ବ ପୁରୁଷଙ୍କ ସ୍ଥାନ)
ଇପରୁ ମାମିର ଗୁମା ତୋ ( ,, )
ମଲ୍ଲ ଗଲ୍ଲ ସାଁ ସାରେ (ଫସାରେ)
ଦୋବାଦୋଲ୍ଲ ଭୁରେ (ଧୋବାଭୁଠରେ)
ଜୁଡ଼ଗୁଡ଼ ମିହା ଅଚାହ୍ଲା ।

ସେଇ ଗୁଇଗୁଇଆ ଆଲୁଅରେ ସ୍ତର କମିଆଁରେ ତାହା ଆଗରେ ଫୁଟିଉଠିଲା ଗୋଗ୍ ଟହଟହ ବଳଷ୍ଟ ଗଢ଼ଣ ପୂର୍ବପୁରୁଷଙ୍କ ଗୁଇ; ବେକରେ କଣ୍ଠି, କାନରେ ଝୁଗ୍, ମୁହଁରେ ହସ—ତେଲ୍ ଚକ୍ ଚକ୍ ଜୁଡ଼ା,

ଆଲୁଅ ଟକ୍ ଟକ୍ ମୁହଁ; କଏ ଯେପରି ତାହାରି କାନ ପାଖେ ସ୍ୱର ଲମ୍ବେଇ ଆରମ୍ଭ କରି ଦେଲା—

ଏ···ହଁ। [ସା''''—ମା''''']

ସଲ୍-ନ-ଲ [ସା ମା ପାଧାମା'''']

ପୁଣି ଗୀତ ଆରମ୍ଭିଲା—

ମାଁ କ ଡ ଆଡ଼୍ ଜମା [ଆମରି ମାଆ ଆମକୁ ପାଳି ମଣିଷ କଲେ]
ମନ ପଚେକ୍

ବାବୁ କ ଡ ଗୋଡ଼୍ ଜମା [ଆମରି ବାପା ଆମୁକୁ ପାଳି ମଣିଷ କଲେ]

ଇପରି ପୁରୁଷ ବେଡ଼ା [ଏହିପରି ଆମେ ପୁରୁଷ ହେଲୁଁ]

ଇପରି ବେଣ୍ଡିଆ ବେଡା [ଏହିପରି ଆମେ ଭେଣ୍ଡିଆ ହେଲୁଁ]

ଇନାକା ଦେଂ ଟମ୍ ଟମ୍ ଗନାସ୍ [କାହିଁକି ତେବେ ଆମେ ତୁନିଚାପି ରହିବା]

ଇନାକା ଦେଂ ମାଡ଼୍‌ଗୁମ୍ ଗନସ୍ [କାହିଁକି ତେବେ ଆମେ ତୁନିଚାପି ରହିବା]

ଆଲୁ ବଡ କେଲା କନାସ୍ [ହାତରେ ହାତ ଗୁନ୍ଥି ଖେଳ ଖେଳିବା ଆସ]

ଗୋଡ଼୍ ଜଟି ନାଚ୍ କନାସ୍ [ଗୋଡ଼ ପିଟି ନାଚ କରିବା]

ରୂପ ମିଳାଇଗଲା।

ଅତି ଆବେଗଭରା କଣ୍ଠରେ କେଉଁ ଅନାଦି କାଳର ପୁରୁଷ କେଉଁ ଅନାଦି କାଳର ସ୍ତ୍ରୀକୁ କେଉଁଠୁ ଯେପରି ସ୍ୱର ମେଲିଦେଇ ତୁଙ୍ଗତୁଙ୍ଗାର ତାଳେ ତାଳେ ସମ୍ବୋଧନ କରି ଡାକିଲା, ହେ ସରସାଗୋଡ଼, ହେ ସୁଡ଼ଆଗୋଡ଼୍, ତୁ ଆରେ—

ୟଏ ଦଣ୍ଡିଆ ହୋକେ କଡ଼ା ହୋଣ୍ଡିଆ ହୋକେ ଗୋଡ଼ଆ ଗଡ଼ାଇ ଜୋଠା ଗଡ଼ାଇ ଆରେ—ୟଏକବାର୍ ପୁନୁଆକାନ ସୋଷ୍ଟ୍ରୁପେଡ଼୍ଆ ପୁନୁଆକାନ ଏ ସୁଡ଼ଆଗୋଡ଼ ଏ ସର୍ସା ଗୋଡ଼ ଆରେ ଆ ରେ ।

[ସାମା ମାପାଧା ମା]

ପଥର ଫାଙ୍କେ କୁହୁଡ଼ିର ଝୋପାଏ ଝୋପାଏ ଜହ୍ନ ଆଲୁଅର କଣାରେ କଣାରେ ସେପରି ସ୍ୱର ଚହଲିଗଲା, ଦିଗ୍‌ବଳୟର ପାହାଡ଼ର ବେଣୀକୁ ବୋଲି ।

ଆରେ—

ଗୋଡ଼ଆ ଗଡ଼ାଇ ଜୋଠା ଗଡ଼ାଇ ଆରେ—ମିଳନର ଉଦ୍‌ବୋଧନ, ହୃଦୟର ଉଚ୍ଛ୍ୱାସଭରା ଡାକ ପଥରକୁ ପଥର ଚହଟି ବୁଲିଲା, ଗୋଜା ପଥରରୁ ଚଟା ପଥର, ଚଟା ପଥରରୁ ଗୋଜା ପଥର ।

ରୂପ ପଥର ପାଲଟିଛି, ସଗିଣୀର ଉଚ୍ଛ୍ୱାସ ମିଳାଇଯାଇଛି ରାତିର ଅନ୍ଧାର ଆଉ ଜହ୍ନରେ । ତେଣୁ ପର ନତ ତାହା ପ୍ରାଣ ପାଇ ଝରେ ପୁଣି, ମନ୍ଦ ହଜଲର ସୀମା ଅତିକ୍ରମ କରି, ଯେବେ ପଥର ଉପରେ ରାତିର ଅନ୍ଧାର ଆଲୁଅ ଝୁରୁ ଝୁରୁ ହୋଇ ଝରି ପଡ଼େ । ଯାଇଛି, କିନ୍ତୁ ଯାଇ ନାହିଁ । ସାଇତା ହୋଇ ରହିଛି ରାତି ଆଉ ପବନରେ, ଦୋହଲି ଦୋହଲି ମାଣ୍ଡିଆ କ୍ଷେତ ଉପରେ ଡଙ୍ଗର (ଜଙ୍ଗଲ) ଉପରେ ଭାସି ବୁଲିବାକୁ, ଅନାଦି ଅନନ୍ତ ମଣିଷର ହୃଦୟର ଭାଷା ।

ଠେଙ୍ଗାଜାନର ନିଦ ଭାଙ୍ଗିଗଲା ।

ଦେଖିଲା ସେ ଏକୁଟିଆ ହୋଇ ବସିଛି, ଦେହରେ ବୋଝେ କାକର ଗୁରିପାଖେ ଖାଲି ମନ୍ଦ ପଥରର ସଭା ।

ଉଠି ଯିବାକୁ ବସିଛି, ସାମ୍ନାର ଚାଲୁବସ୍ତାରେ ଲୁଗା ଖସ୍ ଖସ୍ କରି କଏ ଗୋଟିଏ ଝୋକ ଚଳୁ ଉପରକୁ ମାଡ଼ି ଆସିଲା । ଠେଙ୍ଗାଜାନର ଛାତିରେ ନିଆଁ ପଶିଗଲା । ନଗୁଟିଆ ରାତିରେ, କେହି କୁଆଡ଼େ ନାହିଁ, କଏ ଏ ? ଭୂତ ନୁହେଁ ତ ? ଏହିପରି ରାତିରେ ପରା ଜଙ୍ଗଲରୁ ବାହାରି

ଗାଁ ତଳେ ତଳେ ବାଘ ଡୁମା ବୁଲେ, ପଛେ ପଛେ ବାଘ । ବାଘ ଡୁମା ଏ ନୁହେଁ ! କାରଣ ବାଘ ଡୁମା ଦେଖିବାକୁ ସାତ ଆଠ ବର୍ଷର ପୁରୁଷ ପିଲାଟିଏ ପରି, ତୁଣ୍ଡ ନାଲ, ମୁଣ୍ଡ ଚନ୍ଦା ଆଉ ନାଲ, ଆଖି ଢଳଢଳିଆ । ନାଃ ବାଘଡୁମା ଏ କେବେ ନୁହେଁ । ତେବେ କ'ଣ ମଣିଷର ଡୁମା ?

ଘୃଣାରେ ଛନକା ପଶିଲା । ମୁହୂର୍ତ୍ତେ ପୂର୍ବର ଅନୁଭୂତ ପୁଣି ମନକୁ ଘାଣ୍ଟି ଚକଟି ପକାଇଲା ।

ଠେଙ୍ଗାଜାନ ହୃଦୟରେ ସାହସ ବାନ୍ଧ ଲମ୍ବ ଲଠିଟି ଟାଣ ମୁଠାରେ ଧରି ଉଠି ସିଧା ଠିଆ ହେଲା ।

ଆସିଲା ଲୋକ ଆସି ପହଞ୍ଚ ଖଣ୍ଡେ ଦୂରରୁ ଚାହିଁ ହସଟିଏ ହସି ତୁଣ୍ଡ ନୁଆଇଁ କଥା ଆରମ୍ଭ କଲା—

"ଡରିଲୁ କରେ—"

ଠେଙ୍ଗାଜାନ ଅତି ବସ୍ମିତ ହୋଇ ପାଖକୁ ଛୁଟିଗଲା, ଫୁସ୍ ଫୁସ୍ କରି କହିଲା, ତୁ ଏତେ ରାତରେ, ସନ୍ତୋଷ୍ କୁମାଷ୍ଟ ?

କେତେ ରାତି ତ ଆସିଛୁ, ଆଜ କି ନୂଆ ? କେତେ ଦୂର ବା ଆମ ଘର, ଏଇ ତ ରାସ୍ତା ବାଙ୍କରେ । ହଠାତ୍ ହଠାତ୍ ମନ ହୁଏ ଆସେଁ, ଘରେ ଦେଖି ଆସିବା ଠେଙ୍ଗା କସ୍ କରୁଚ, ଚୋର କି ଗରଜ, ଚୋର ଘୁଂଘୁଡ଼ି ଶବଦ ଶୁଣି ଘରକେ ଫେରିଯାଏଁ ।

ଠେଙ୍ଗାର ଦେହ ଥରୁଥାଏ, କହିଲା ଏ ଆଉକେ ଆ—କଥା ହେବା—

ସନ୍ତୋଷ୍ କହିଲା, "ନାଇଁ, ପୁଣି କେ ଉଠିବେ । ଆ ରାସ୍ତାଏ ରାସ୍ତାଏ ଯିବା, କେହି ନାଇଁ, ମୁଁ ଦେଖି ଆଇଲି ।

ସନ୍ତୋଷକୁମାଷ୍ଟ ଆଉ କଥା ନ କହି ଯେଉଁ ବାଟେ ଆସିଥିଲା ସେଇ ବାଟେ ବାଟେ ଚାଲିଲା, ପଛେ ପଛେ ଠେଙ୍ଗା । ନିଶବଦ ସାଇଁ ସାଇଁ ରାତରେ ସେମାନେ ଚାଲିଗଲେ, ଗଡ଼ାଣିଆ ରାସ୍ତାରେ ବାଟେ ବାଟେ ।

କିଛି ସମୟ ପରେ—

ଯେତେବେଳେ ଦକ୍ଷିଣର ଗୋଟିକିଆ ଚଢ଼େଇ ଆକାଶରେ ଆଖୁର ଚଳକୁ ଚଳକୁ ବୁଡ଼ି ଆସୁଥିଲା—

ଠେଙ୍ଗାଜାନ ପଚାରିଲା, କାଲି ପୁଣି—?

ସନ୍ତୋଷ୍‌କୁମାରୀ ହସିଲା ଆଉ କହିଲା, ଏଠିକି ଆସିବୁ, କଥା ହେବା ।

ଦୁହେଁ ଦୁଇ ବାଟରେ ଚାଲିଗଲେ ।

—୭—

ଘର ତୋଳା ଲାଗିଛି ରାମ ନାଇକର ।

ବାଉଁଶ ହଣା ହେଉଛି, ମାଟି ଚକଟା ହେଉଛି, କେତେ ଟୋକା-ଟୋକୀ ଲାଗିଛନ୍ତି କାମରେ । ତାଙ୍କର ମୂଲ, ଦୁଇପା ମାଣ୍ଡିଆ, ଟୋପାଏ ଟୋପାଏ ରଙ୍ଗା ମଦ ।

ରାମ ନାଇକ ଠେଙ୍ଗାକୁ ବସେଇ ରଖିଛି କାମ ପାଖରେ, ନିଜେ ଆଉର ଦଳେ ଲୋକ ନେଇ ଲାଗିଛି ଝୋଲାରେ ହିଡ଼ ବାନ୍ଧି କ୍ଷେତ ତିଆରି କରିବାରେ ।

ବେଳେ ବେଳେ ସେ ଭାବେ, ତା ପରି ସୁଖୀ ଜଗତରେ ନାହିଁ ।

ପିଲାଦିନେ ଥିଲା ସେ ଭାରି ଗରିବ, ଅଳ୍ପ ବୟସରେ ବାପ ମା ଛାଡ଼ିଦେଇ ଗଲେ । ତା' ପରେ ସେ ବଡ଼ ହେଲା, ଜମି ଖଣ୍ଡେ ଖଣ୍ଡେ ଯାଠୁ ତାଠୁ ଧରି ଚଷିବାକୁ ଆରମ୍ଭ କଲା । ଦେହ ମେହେନତ୍ ହାଗ କେତେ ଧାନ ମାଣ୍ଡିଆ ଘରେ ଭର୍ତ୍ତିକରି ଘର ପୂରେଇଲା; କ୍ରମେ ତା'ର ନିଜର ଗୋରୁ ଗାଈ ହେଲେ, ନିଜର ଜମି ହେଲା, ଆପଣାର ପରିଶ୍ରମରେ ଭୂମିରେ ସୁନା ଫଳେଇଲା । ଭାଗ୍ୟ ତା ପ୍ରତି ପ୍ରସନ୍ନ ।

ଦେହ ଜୋରରେ ଯେତେବେଳେ ଗାଁର ଆଉ ସମସ୍ତିଙ୍କୁ ଟପି ସେ ସମ୍ପତ୍ତି ଅରଜି ନାଁ ଡାକ୍ ହେଲା, ଠିକ୍ ସେତିକି ବେଳେ ତା'ର ଦାଢ଼

ହର ନାଇକ ବୁଢ଼ା ଅପୁତ୍ରକ ଆଉ ନିଁ-ଦାର ହୋଇ ମରିଗଲା । ଅମିନ୍ ଶିବ୍‌ଦନ୍ତ୍ୟ ତାକୁ ହିଁ କଲେ ଗାଁର ନାଇକ ।

ସେହିଦିନୁ ଏକ ପ୍ରକାର ସୁଖରେ ହିଁ ତା'ର ଚାଲିଛି ।

ତା' କପାଳକୁ ଝିଅ ନାହିଁ, ଝିଅ ଥିଲେ ଯୋଗ ଟଙ୍କା ମଧ୍ୟ କିଛି ଘରେ ପଶିଥାନ୍ତା । ନ ଥାଉ ପଛେ, ଅଛି ଠେଙ୍ଗାଜାନ, ତା'ର ବୁଢ଼ା ଦିନର ବଳପ, ସେଇ ତା'ର ଟଙ୍କା ଗଛ।

ଏଡ଼ୁ ଟିକିଦିନୁ ଠେଙ୍ଗା ତା'ର ଗୁଣର ପରିଚୟ ଦେଇଛି । ବାପ ପରି ପରିଶ୍ରମୀ, ବାପ ପରି ସଦାଶୟ । ଆଠ ବର୍ଷରେ ଠେଙ୍ଗା ବାପର ଗୋରୁ ଜଗିଲା, ବାର ବର୍ଷରେ କ୍ଷେତରେ ଲଙ୍ଗଳ ଧରିଲା । ପନ୍ଦର ବର୍ଷରେ ବାପର ସଂସାରର ସେ ଅଧେ ।

ନିଜେ ଆଗୁସାର ହୋଇ ମୁଲିଆଙ୍କୁ କାମ କରେଇବା, ଝଡ଼ ବରଷାରେ ଗୋରୁ ଗୋଟିକା ଗୋଟି ଜଙ୍ଗଲ ସନ୍ଧିରେ ଖୋଜି ଖୋଜି ଘରକୁ ଅଡ଼େଇ ଅଣିବା, ନିଜେ ସବୁ କଥାକୁ ପିଠି ପତେଇ ଦେବା, ଏପରି ଗୁଣମନ୍ତ ପୁଅ ତା'ର ଠେଙ୍ଗା, ତା'ର ଭଲ ଅସାର ନାହିଁ, ସୁଖ ଦୁଃଖ ନାହିଁ, ବାପର ସଂସାର ଉନ୍ନତି କରିବାକୁ ସେ ଯେପରି ଗୋଟାଏ କଳ ଯନ୍ତ୍ର ପରି ।

ବାପ କିଛି ପଚାରିଲେ ପୁଅ କହେ, ମୋର୍ କସ୍‌ରେ ଆଜ୍ଞା, ତୁଇ ଯା ବୋଇଲେ ତା ।

ତା'ର ବଢ଼ିବାର ପାଇଁ ରାମ ନାଇକ ଘର ତୋଳୁଛି ନିଠେଇ ନିଠେଇ । ବଳ କାମ ହଳିଆଙ୍କୁ ଛାଡ଼ିଦେଇ ନିଜେ ଆସି ଘର ଆଗରେ ପଥର ଉପରେ ବସି ପଡ଼େ, ଭାରି ଡାକ ହାକ କରେ, କେତେବେଳେ ଆପେ ବାଉଁଶ କାଠ ଚିରି ପକାଏ । କେତେବେଳେ ନିଜେ ମାଟି ବୋହିନଏ, ଆଉ କେତେବେଳେ ଥିରହୋଇ ବସି କାମକୁ ଅନେଇଁ ଅନେଇଁ ପିଙ୍କା ଟାଣେ ।

—୮—

ସୁଉଁସୁଉଁଆ ଖଷରେ କାନ୍ଧରେ ଯୋଡ଼ ଯାଉଁଳ ପକେଇ କାଳିଆ କୋଟ୍ ଗଣ୍ଡେଲେଖାଁ ଦେହରେ ମଡ଼େଇ ଖ୍ରୀଷ୍ଟଧର୍ମର ସନ୍ଦେଶ ଧରି ଏ

ଗାରୁ ସେ ଗାଁ ଗୁରୁମାନେ ବୁଲୁଥାନ୍ତି । ଗମ୍ ଗମ୍ ଝାଳ ବୋହିଯାଉଥାଏ, ପାଦ ଫାଟି ପଡ଼ୁଥାଏ । କିନ୍ତୁ ଯାହାକୁ ଦେଖିଲେ ତୁଣ୍ଡରେ ତାଙ୍କର ଧର୍ମ-ମତରେ ସ୍ପଷ୍ଟ କଥା, ପ୍ରଭୁ ପରମ ପିତାଙ୍କୁ ବିଶ୍ୱାସ କର, ଯେ ଆପଣାର ପ୍ରିୟ ପୁତ୍ରଙ୍କୁ ସଂସାରର ପାପ ପରିତ୍ରାଣ ନିମନ୍ତେ ପ୍ରେରଣ କରିଥିଲେ, ସର୍ବଦା ହୃଦୟରେ ତାଙ୍କୁ ଧ୍ୟାନ କର । ଖରା ହେଉ ବର୍ଷା ହେଉ କଷ୍ଟ ହେଉ ଦୁଃଖ ହେଉ ଏହିପରି ତାଙ୍କୁ ବୁଲିବାକୁ ହେବ । ସାହେବ କହିଛନ୍ତି, ନୋହିଲେ ଦରମା ମିଳିବ ନାହିଁ । ପିଣ୍ଡାପଦର ଗାଁର ଶାନ୍ତମୂର୍ତ୍ତି ସଲମନ ଗୁରୁ ଶୁଭ ବାରତା ଶୁଣାଇବାକୁ ଏ ଅଞ୍ଚଳକୁ ବାରମ୍ବାର ଆସନ୍ତି । ଚିକ୍ ଚିକ୍ କପାଳରେ ଅଟଳ ଧର୍ମବିଶ୍ୱାସ ଜକ ଜକ ହୋଇ ଝଟକି ପଡ଼ୁଥାଏ । ପରା ଦେଶର ଧର୍ମର ସୁସମାଚାର ପବନରେ ଉଡ଼ି ଉଡ଼ି ଦାଦବୁଢ଼ାର କାନବାଟେ ଭଁ ଭଁ ଚାଲିଯାଏ, ହୁଙ୍କାବୁଢ଼ା ମୁଣ୍ଡ ଟେକେ ନାହିଁ ।

ଅଧରାତରେ ସେହି ଭାଷାରେ ସିଟିଏମ୍ ସ୍କୁଲର ଲୋକେ ଦାଦବୁଢ଼ାକୁ ଉଦ୍‌ବୋଧନ କରନ୍ତି, ହେ ପରମପିତା ଦାଦବୁଢ଼ା, ତୁମ୍ଭେ ବିଶ୍ୱାସ କର, ବିଶ୍ୱାସ କର । ଆମ୍ଭ ମନରେ କୌଣସି କୁଟିଳତା ନାହିଁ । ସରଳ କହୁଁ ସତ୍ୟ କହୁଁ । ଅଭାବ ନିମନ୍ତେ ସିନା ଏ ଦୁର୍ଯୋଗ ରାତିରେ କାହା ଶାଳରୁ ଗୋରୁଟିଏ କାହା ଶୋଇବା ଘରୁ ଥାଳି ପଟେ ନେଇଆସି କୁଟୁମ୍ବ ପ୍ରତିପୋଷଣ କରିବା ନିମନ୍ତେ ଏତେ ବିପଦରେ ଆମ୍ଭେ ଧାଇଁଥାଉଁ, କିନ୍ତୁ ଏ ଟେଷଣ ଲୋକେ, ଏ ସଭାଇନସ୍‌ପିଟି, ବିଧର୍ମୀ ସେମାନେ, ଧର୍ମରେ ବିଶ୍ୱାସ ନାହିଁ, କାହୁଁ ବୁଝିବେ ଆମ୍ଭର ଦୁଃଖ ପ୍ରଭୋ, ଏକା ତୋତେ ଜଣା ।

ସେମାନେ ମଧ୍ୟ ଧର୍ମ ଗ୍ରହଣ କରିଛନ୍ତି, ଏଲିଓ, ଜହନ, ଆଲହାଦର, ପିତର, ସିମନ, ଫାଉଲ, ମିକାଲ । ଏହିପରି ଯେତେ ସେମାନେ । କିନ୍ତୁ ତାଙ୍କର ଖାଲି ବିଶ୍ୱାସରେ ଚଳିବ ନାହିଁ । ଅନୁତାପ କରିବାକୁ, ଦୋଷ ସ୍ୱୀକାର କରିବାକୁ ପୋଥି ଗୋଲ ସଲମନ ଗୁରୁ ଯାହା ଶିଖାଇ ଦେଇ ଯାଉଛନ୍ତି, କଚିରି ଅଦାଲତରେ, ସମାଜରେ ବ୍ୟବହାରିକ ଜୀବନରେ ତା'ର ମୂଲ୍ୟ ବା କେତେ ? କଥା ଫିଟିଗଲେ କୌଣସି ଗୁରୁ କୌଣସି ପାଷ୍ଟର ରକ୍ଷାକରିବେ ନାହିଁ । ନବକାର ଆକାଶୀ

ଦେବତା ମନୁଷ୍ୟର ପାପର ବୋଝ ବୋହୁଛନ୍ତି, ଭଲ । ଏହି ସୁସମାଚାର, ଯାହାଙ୍କର କ୍ଷମା ମିଳିବ, ସବୁ ପାପର ବୋଝ ସେ ମୁଣ୍ଡାଇବେ । ଯେ ଯେପରି ଚିନ୍ତୁ ତାଙ୍କରି ରକ୍ତରେ ସମସ୍ତଙ୍କର ପାପ ସ୍ଖଳନ ହେବ । ହିନେ ନା ହିନେ ।

ସେମାନେ ନିର୍ବିକାର ହୋଇ ବାଟ କାଟି ଚାଲନ୍ତି । ଯେତେବେଳେ ହୃଦୟର ଉଚ୍ଛ୍ୱାସ ପ୍ରବଳ ହୋଇପଡ଼େ, ସାକାର ଦେବତା ପ୍ରୟୋଜନ ହୁଏ, ସେତେବେଳେ ଗୁପ୍ତ ପାଷ୍ଟରଙ୍କ ଦୃଷ୍ଟି ଏଡ଼ି ସେମାନେ ଦାଦବୁଢ଼ା ପାଖେ, ଖାଙ୍କର ଦେବତା ପାଖେ ମାନସିକ ଯାଚନ୍ତି । ବଳ ହିଅନ୍ତି, ଦୁଇଆଡ଼୍ ଦୁଇଆଡ଼୍ ହୋଇ ସଂସାରକାର୍ଯ୍ୟ ଏକ ପ୍ରକାର ଚଳିଯାଏ ।

ସନ୍ତୋଷକୁମାରୀ ଏହି ବିଶ୍ୱାସରେ ବଢ଼ି ବଢ଼ି ମଣିଷ ହୋଇଛି । ମଣ୍ଡଳୀ ସଭାରେ ଦେଖିଆ ଦେବଦେବୀଙ୍କୁ ପ୍ରେତ ବୋଲି କହି, ସଇତାନ୍‌ର ଅନୁଚର ବୋଲି କହି ସମସ୍ତେ ଯେତେ ଗାଳିଦେଲେ ସୁଦ୍ଧା ଆପଣା ଆପଣା ଘରେ ନିର୍ଜନ କୋଣଟିଆରେ ନିଜର ପ୍ରୟୋଜନ ଅନୁସାରେ ସେମାନେ ଚୁପ୍‌ଚାପ୍ ଉପାଧିଆ ପଡ଼ିଯାଆନ୍ତି, ମନରେ ବଳ ଆସେ ।

ସନ୍ତୋଷକୁମାରୀ ଦାଦବୁଢ଼ା ତ ଦାଦବୁଢ଼ା, ହୁଙ୍କାବୁଢ଼ାକୁ ସୁଦ୍ଧା ଅମାନ୍ୟ କରେ ନାହିଁ । ରାମ ନାଇକର ପୁଅ ଠେଙ୍ଗାଜାଣ ଘଟଣାର ସୂଅରେ ତାହା ଆଡ଼କୁ ଆଜିକ ଆସିଛି, ସେ କିଜେ ଆଶା ପାଇଛି, ଏ ତ ଭଲ କଥା । କିନ୍ତୁ ଆହୁରି ଅନେକ କାମ ବାକି ଯେ ! ମନେ ମନେ ସେ ବି କହେ, ଦାଦବୁଢ଼ା ତୋର ଦୟା, ତୋର ଦୟା । ଏକୁଟିଆ ଅନ୍ଧାରର ପହିଲି ପହରେ ଦାଦବୁଢ଼ା ମୁଣ୍ଡିଆ ଉପରକୁ ସେ ଥରେ ଥରେ ଉଠିଯାଏ । ଶୁଖିଲା ତାଳପତ୍ର ଏକାଠି କରି ଦାଦବୁଢ଼ା ଅନ୍ଧ ପୁଞ୍ଜ ନିଆଁ ଟିଏ କରେ । ଆପଣାର ବିଶ୍ୱାସ ଜଣେଇ ମନେ ମନେ କହିହୁଏ, ଦାଦବୁଢ଼ା, ତୁ ଜନ୍ତୁର ରହିବୁ ଆଜ, ମତେ ଦୟା କରିବୁ, ମୋ କଥା ମନେ ରଖିଥିବୁ ସବୁବେଳେ । ଦାଦବୁଢ଼ାର ସାତବେଣ୍ଟିଆ ଖଜୁରି ଦେହ ଅନ୍ଧାର ଭିତରେ ମୂର୍ତ୍ତିକ ହସା ହିଏ । ଅନ୍ଧାରର ସମୁଦ୍ର ଭିତରେ କୋଣଟିଆ ମୁଣ୍ଡିଆ ଉପରେ ସନ୍ତୋଷକୁମାରୀ ଦାଦବୁଢ଼ାକୁ ଆଲୁଅ ଦେଇ ଚାଲିଆସେ ।

ଅଥଚ ଠିକ୍ ଏହାପରି ଦିନେ ଠେଙ୍ଗାଜାନକୁ ସେ ଛଟପଟ କରି ମାରେ, ଦେଖା ଦେଇ ହସି ହସି ଚାଲିଯାଏ । କଥା କହେ ନାହିଁ, ଅଥବା ମୁହିଁ ଟେକ ଅନାଏଁ ନାହିଁ ବି ଥରେ । ଖୋଷାରେ ଫୁଲ ପିନ୍ଧି ଦେହ ବଙ୍କେଇ ବଙ୍କେଇ ଚାଲିଯାଏ ।

ଠେଙ୍ଗାଜାନ ଗୁମ୍ ହୋଇ ବସେ । ରାମ ନାଇକ ପ୍ରସ୍ତୁତ ହୁଏ ସାରିଆଦାନ୍‌କୁ ବୋହୂ କରି ଆଣିବାକୁ ଯିବ ।

—୯—

ରାମ ନାଇକ ଚଞ୍ଚଳ ଚଞ୍ଚଳ ପ୍ରସ୍ତୁତ ହେଲା । କନ୍ୟା ମାଗିବାକୁ ଯିବ ପାଞ୍ଚ ବୋତଲ୍ ମଦ ଦରକାର । ସେ ତା ଯେକୌଣସି ସମୟରେ କଣା ହୋଇ ଆସିବ । ଆଉ ପାଞ୍ଚ ହାଣ୍ଡି ଲନ୍ଧା ମଦ, ସେଥିପାଇଁ ମାଣ୍ଡିଆଜାଉକୁ ସଢ଼େଇ ସାତଦିନ ଆଗରୁ ପାଗଯୋଗ ନ କଲେ ଭଲ ନିଶା ବାହାରିବ ନାହିଁ । ଖାଲି ଏତିକି ନୁହେଁ, ଭଲ ଲୁଗା ଖଣ୍ଡେ ଦରକାର । କନ୍ୟା ନାକ କାନ ପାଇଁ ସୁନା ଖଣ୍ଡେ କି ଦି'ଖଣ୍ଡ, ଆଉ ଦିଶାରି (ପୁରୋହିତ) ପାଗଯୋଗ ଠିକ୍ କରିଦେବ, କେଉଁଦିନ ଭଲ, କେଉଁ ମୁହୂର୍ତ୍ତରେ ଆଶା ଫଳିବ । ସେହିପରି ବେଳକାଳ ଜାଣି କନ୍ୟା ଘରକୁ ଯାଇ ପାଞ୍ଚ ପଞ୍ଚାଏତରେ କଥାଟା ଛିଣ୍ଡେଇ ଦେଇ ଆସିବାକୁ ପଡ଼ିବ । ଶୀତ ଚାଲିଯାଉଛି, କୁହୁଡ଼ି ଉଠିଯିବ, ଚାରିଆଡ଼ ସଫା ପରିଷ୍କାର; ବଣ ଜଙ୍ଗଲରେ ନୂଆ ଫୁଲ କଅଁଳିଆ ପତ୍ର । ଏଇ ଶୀତଶେଷରେ ପହିଲି ବସନ୍ତରେ ଧାଂଡ଼ା ଧାଂଡ଼ୀକୁ ବାୟା ଲଗେ । ତାହା ଆଗରୁ ବୁଢ଼ାଏ ବୁଢ଼ାଏ କଥା ଠିକ୍ ଠିକଣା କରି କନ୍ୟା ମାଗଣା ଛିଣ୍ଡାଇ ଦେଇ-ସାରିଥିଲେ ଭଲ ।

ଦିନ ପାଖେଇ ଆସିଲା । ଆପଣାର କାର୍ଯ୍ୟ ପାଇଁ ବାପ ହୁକୁମ ଅନୁସାରେ ଠେଙ୍ଗାଜାନକୁ ଖୁବ୍ ଖଟିବାକୁ ପଡ଼େ । ମନର କଥା ମନଭିତରେ ଥାଏ, କେବେ କେଉଁଦିନ ଭାଗ୍ୟ ଥିଲେ ନିଘୁଞ୍ଚିଆ ନିର୍ଜନ ରାତିରେ ସନ୍ତୋଷ୍‌କୁମାରୀ ସାଙ୍ଗେ ଭେଟାଭେଟି, କଥାଭାଷା ଟିକିଏ ଟିକିଏ ହୁଏ, ସେତିକକୁ ସମ୍ବଳ କରି କାଳ ପରି ଠେଙ୍ଗାଜାନ ଚାଲିଯାଏ ।

କନ୍ୟା ମାଗୁଣି କଥା ଗାଁଯାକରେ ଚହଳ ପଡ଼ିଲାଣି । ସାରିଆଦାନ୍‌ର ବନ୍ଧୁଗୁଡ଼ିକ ତାକୁ ଘଷି ମାଜି ଦିନୁଦିନ ନୂଆ ସଜ କରୁଥାନ୍ତି । ବାପା ହାଟରୁ ନୂଆ ନୂଆ କେତେ କେତେ ମାଳ ଆଣି ଦେଉଛନ୍ତି, ଆଙ୍ଗୁଠି ଗଣି ଗଣିକେ ପିତ୍ତଳ ଢାଳେଇ ମୁଦି । ସାରିଆଦାନ୍ ହଳଦିଆରେ ଝଟକ ନୂଆ ଲୁଗାରେ ସଜ ହୋଇ ଅଳଙ୍କାର ବୋଝେଇ ହୋଇ ଧୀର ଧୀର ଆଖିର ଦୃଷ୍ଟି ଆପଣା ଭିତରକୁ ପକାଇ ବାଟ ଚାଲେ, କେବେ ଠେଙ୍ଗାଜାକ ସାଙ୍ଗେ ଦେଖାହେଲେ ତଳକୁ ମୁହଁ ପୋତି କଣେଇ କଣେଇ ଅନାଏଁ । ଆଉ ହସିଦେଇ ଚାଲିଯାଏ ।

ଠେଙ୍ଗାଜାକକୁ ମଧ୍ୟ ସାଙ୍ଗ ସାଥିଙ୍କଠାରୁ ଟାହିଟାପରା ଶୁଣିବାକୁ ପଡ଼େ ବହୁତ । ସେ ଅଭିନୟ କରେ ଯେପରିକି ସବୁଥିରୁ ସେ ବି ଆମୋଦ ପାଉଛି, ସେ ପଦାକୁ ହସେ, ମନଭିତରେ ସବୁ ଗୋଳମାଳ ହୋଇଯାଏ ।

ସାରିଆଦାନ୍ ଆଉ ସନ୍ତୋଷ୍‌କୁମାରୀ ଠେଙ୍ଗାଜାକ ତଉଲି ଦେଖିବାକୁ ଚେଷ୍ଟାକରେ, ସାରିଆଦାନ୍ ସୁନ୍ଦରୀ, ସାରିଆଦାନ୍ ଭଲ—କିନ୍ତୁ ସେ ଯେମିତିକା ନଚାନ୍ତି ଗାଈଗୋରୁ ପରି ଏତେ ସହଜ ସେ ତା'ର ଚିନ୍ତା ମନ ଉପରେ ଖେଞ୍ଚା ମାରିପାରେ ନାହିଁ, ସବୁଥିରେ କାମ୍ୟ ସନ୍ତୋଷ୍‌କୁମାରୀ—ସେ ଜାଳିପାରେ, ସେ ଟାଣିପାରେ ।

ମନେ ମନେ ଠେଙ୍ଗାଜାକ ଭାବେ, ସନ୍ତୋଷ୍‌କୁମାରୀ ତା'ର କେହି ନୁହେଁ, ସେ ବଡ଼ ହୋଇଛି, ସନ୍ତୋଷ୍‌କୁମାରୀ କାହାରି ପରର । ଏପରି ଯେତେ ଥର ଭାବେ ସେତେ ଥର ମନ ଭିତରେ କେଉଁଠି କ'ଣ ପବନରେ ମିଳେଇ ଯାଇ ଶୂନ୍ୟ ହୋଇଯାଏ, ସେ ଏପରି ଧାରଣାକୁ ସମ୍ଭାଳିପାରେ ନାହିଁ । ଚାଲିଲା ବୁଲିଲା ପରି ହୋଇ ତାଙ୍କ ସାହିପାଖେ ଯାଇ ନସର ପସର ହେଉଥାଏ । ଏଇ କାଳେ ସନ୍ତୋଷ୍‌କୁମାରୀ ବାହାରିପଡ଼ିବ କାଳେ ।

ସେଦିନ ଅନ୍ଧାର ଘଞ୍ଚ ହୋଇଥାଏ । ସମସ୍ତେ ଶୋଇପଡ଼ିଥାନ୍ତି । ମଝିରାତିରେ ଶୀତରେ ମଞ୍ଜ ଥରିଯାଉଥାଏ । ସନ୍ତୋଷ୍‌କୁମାରୀ ଆଉ ଠେଙ୍ଗାଜାକ ଭେଟାଭେଟି ହେଲେ, ତିନିସପ୍ତାହ ପରେ ଥରେ । ସେ ସଫା ସଫା ପଚାରିଲା କାହିଁକି ଏତେ କଥା ଆଉ ଠେଙ୍ଗା ? କେତେଦିନ ବା ? ତା ପାଇଁ କନିଆଁ ମାଗ୍‌ନି ହେବାକୁ ବସିଲାଣି, ଆଉ କିଛିଦିନେ ସୁଖରେ ରୁ

ସାଣ୍ଆଦାନ୍‌କୁ ନେଇ ଘରକରବୁ, ଏତେ ଲୁଚକାଳ ଖେଳର ଆଉ ଦରକାର କ'ଣ ? ସନ୍ତୋଷ୍‌କୁମାଶ କଜଆ କରବାକୁ ଆସିଥିଲ—ଥିର ଥିର କଥା ଫଁ ଫଁ ନଶ୍ୱାସରେ ମିଶି ମନଗହ୍ୱରକୁ ପଶିଯାଏ, ଆଉ ଲୁହଧାରରେ ସ୍ୱର ଓଦା । ବାପା ଜବରଷ୍ଟି କରୁଛନ୍ତି ବୋଲ କହୁଚୁ ? ତୁ ପର ଅଣ୍ଡା । ପିଲ, ତୋ ଲୁଣ୍ଡରେ କଥା ନାହିଁକ ? ଆଉ ଥାଉ ମୁଁ ଚତେ ଏତେ ବୁଦ୍ଧି ବତେଇବା କ ଦରକାର ? ତୋ ସୁଖରେ ତୋ ବାଟରେ ତୁ ଯା, ମୋର କହିବାର କଛି ନାହିଁ । ଆଗରୁ ତ କେତେ ଚତେ ମନା କରୁଥିଲ, ଏଥିରେ କଛି ଲଭ ନାହିଁ, ଆମର ଜାତ ଭିନ୍ନେ, ଯୋଗଟା ନ ହେବାର କଥା । ଯେଉଁ ସମ୍ପତ୍ତିର ଆମର ବାଢ ଅନ୍ୟକାଳରୁ ଝୁଲୁ ନାହିଁ, ବୃଥା କଥା ଏ ସବୁ, ତୁ ସେତେବେଳେ ମାନଲୁ ନାହିଁ । ଏବେ ତୋ ଭନା ମୋର ଆଉ କେହି ନାହିଁ, ମାତ୍ର ବାପମାଙ୍କର ସୁନାପୁଅ ହୋଇ ମତେ ଗୋଡ଼ରେ ଗଡ଼େଇ ଦେଇ ତୁ ତୋର ବଧୂ କନଆଁ ନେଇ ଘରଦୁଆର କରବୁ ମୁଁ ଜାଣେ । ଆଉ ଏମିତ ଅବସ୍ଥା ଆମର ଛାତ କୋଉଡ଼ହୋଇ ମନେ ମନେ ମରଗଲେ ପଦାରେ ପଦେ କଥା ବ କହିବାକୁ ମନେ ହବ ନାହିଁ ।

ସନ୍ତୋଷ୍‌କୁମାଶ କାନ୍ଦପକେଇ ଖୁଲଗଲ, ରଖିଗଲ ଠେଙ୍ଗାଜାନ ମନରେ ଘୋର ଅଶାନ୍ତ, ଉଦୁମୁଦା ଅଶାନ୍ତ, ଯେ ଖାଲି ଗୁଡ଼ିପିଡ଼ି ହୁଏ, ଆଉ ପଦାକୁ ପଦାକୁ ବାହାର ପଡ଼ିବାକୁ ବାଟ ଖୋଜେ ।

ବାପକୁ ମା'କୁ ଦ'ପଦ ଟାଣ ଟାଣ କର ବତେଇ ଦେଲେ ତା'ର ପ୍ରାଣରେ ଶାନ୍ତ ଆସନ୍ତା, ବୁଢ଼ା ନାଇକର ନଶଗୁଡ଼ାକ ଓପାଡ଼ ପକାନ୍ତା, ବଳେ ବଳେ ଆପଣା ଇଚ୍ଛାରେ ଆପଣାର ଭଲମନ୍ଦ ସେ ବାଛି ନଅନ୍ତା । କନ୍ତୁ ଯେଉଁଠି ଆରପଟୁ ରେକାରେକ ନାହିଁ ସେଠି ରାଗ ନଷ୍ଫଳ, ସେଠି ଦୁଃଖ ଆଉ ରୋଷ ଖାଲି ଆପଣା ପ୍ରାଣକୁ ପୋଡ଼ ଅଙ୍ଗାର କରେ । ବାପ ମା, ସେମାନେ ଧାଇଁଛନ୍ତି ତା'ର ସୁଖରେ, କାହିଁକ ବାହାଘରଟା ଚଞ୍ଚଳ ନ ହେଉଛି ସେଥି ସକାଶେ ସେ ଦୁହିଁଙ୍କ ଭିତରେ ମନ ଖରାପ, ଅଶାନ୍ତ । ତାଙ୍କର ଆନନ୍ଦରେ ମାଟି ଗୋବରପାଣି ଅଜାଡ଼ି ଦେବକୁ ହାତ ଯାଏ ନାହିଁ । ମନ ପଛେଇଯାଏ । ତାଙ୍କର ଭାବନା ଭିତରେ ତାଙ୍କୁ

ଚାଳ ପକେଇ ଠେଙ୍ଗାଜାଣକୁ ଆଗେଇ ଯିବାକୁ ପଡ଼େ, କିନ୍ତୁ ମନେ ମନେ— ଖାଲି କହିଁ ଉଠେ, ଆଜି ଯୋଜି ଗୁଡ଼ିଗଲା ! ଉଃ ।

ଠେଙ୍ଗାଜାଣ ଅନ୍ୟମନସ୍କ ହେଲା, ବସିଛୁ ତ ବସିଛୁ, ଖାଇବାକୁ ମନ ନାହିଁ । ବନଯାକ ମାଟିମେଦ ପର । ସଞ୍ଜ ବୁଡ଼ଗଲେ ମାଟିମେଦରେ ହଠାତ୍ ଗୁଡ଼ାଏ ଅଖୋଜା ଜୀବନ କଏ ପୂରେଇ ଦଏ । କଳ ପର ସେ ଘୂରବୁଲେ, ସମାଜର ବନ୍ଧାଗତରୁ ଫିଟିପଡ଼ ପଦାକୁ ଯିବାକୁ ତ ସାହା ନାହିଁ, ସେ ଆପଣାକୁ ହିଁ କକ୍ଷ କରି କେନ୍ଦ୍ର କରି ଭଉଁରି ଖାଉଥାଏ, ଆଜି ଗହନ ମନ ଭିତରେ ଆଟେପ ଆଟେପ ସାତ ପାଞ୍ଚ ଲାଗିଥାଏ, ଉପାୟ କାହିଁ, ଉପାୟ କାହିଁ ?

ମା କହିଲା ବାପକୁ—କାହିଁକି ପୁଅଟି ମୋର ମନମରା ହୋଇ-ଯାଉଛି ଏଇ କେତେଦିନ ହେଲାଣି ?

ବାପ କହିଲା—କାହିଁ ନାହିଁ ତ ? ଯେ ବାହା ହୁଏ ସେ କ'ଣ ମନମରା ହୋଇଥାଏ କେବେ ? ଭଲ ଅଛି, ଖାଉଚି ପିଉଚି, ଡୁଙ୍ଗୁଡୁଙ୍ଗା ବଜାଉଚି, ଗୀତ ବୋଲୁଚି, ଏଇ ତ ଧାଂଡ଼ାର କାମ । ଏଥିରେ ମନ ଦୁଃଖ କଲା ବୋଲି କିଏ କାହିଁକି କହିବ ? ଠେଙ୍ଗାବୋଉ ବିଶ୍ୱାସ କଲା ନାହିଁ, ମୁହଁ ଶୁଖେଇ ମୁଣ୍ଡ ହଲେଇ ହଲେଇ ସେ କହିଲା—ମତେ କେମିତି ଲାଗୁଚି ଜାଣ ? ପୁଅ ମନରେ ଆଉରି କଅଣ ପଶିଚି । ଯୋଉ କଥା ସେ ତୁମ ଆଗେ କହିବ ନାହିଁ କି ମୋ ଆଗେ କହିବ ନାହିଁ । ସାରିଆଦାନ୍‌କୁ ବୋହୂ କରି ଆଣିବା, ହଁ ଭଲ ହବ, କିନ୍ତୁ ପୁଅ କ'ଣ ସେଥିରେ ଷୋଳଅଣା ମଜିଛି ? ତା'ର କ'ଣ ସାରିଆଦାନ୍ ନଜର, କହୁ ତୁମେ ଜାଣୁଚ ? କାଳେ ଆଜି କିଏ— ବାପ ଆଜି ବୁଝାଇ ଦେଲା ନାହିଁ, କେତେ ସବୁରେ ସେ କାମଟିଏ ଆରମ୍ଭ କରିଦେଇଛି, ଏଥିରେ ପୁଣି ସନ୍ଦେହର ଗ୍ଳଇ ସେ ସହିଲା କପରି । ବିରକ୍ତ ହୋଇ ପାଟିକରି ଉଠି କହିଲା—ଆରେ ଭଲ କଥା ଏ ! ଜାନିରି ଝିଅ, ତହିଁରେ ପୁଣି କେତେ ଭଲ ପିଲା, ଭାଗ୍ୟରେ ଥିଲେ ଏମିତି କନିଆଁ ମିଳେ । ତାକୁ ଠେଙ୍ଗାର ଇଷ୍ଟ ନାହିଁ ? ଆମେ କି ଜାଣୁ ? ଆମେ କ'ଣ ମନାକରିବୁ ତାକୁ ଆପଣା ପାଇଁ କନିଆଁ ବାଛିବାକୁ ନା କ'ଣ ? ଆମକୁ ଯାହା ଭଲ ଆମେ ତା କରୁଛୁ—ନାହିଁ ଯଦି ଆଉ କୋଉଟି ତା'ର ଇଚ୍ଛା ଅଛି ସେ କ'ଣ ମାଇକିନିଆଁ ପିଲା

ହୋଇଛି, କହୁ ନାହିଁ କାହିଁକି ? ତା'ର ସରଳ ବିଶ୍ୱାସରେ ଠେଙ୍ଗାବୋଉ ପୁଅଟିରେ ଜୀବନ ପଶିଲା, ଏହିପରି ସରଳିଆ ମଣିଷଟିଏ ଏ, ଗ୍ରାମ ଜାଣ, ଯେ ତାର ବିଶ୍ୱାସ ମଧ୍ୟ ପବନରେ ବୁଲାଇ ପଗଗ ପରି ହଲି ଦୋହଲି ଭାସିଯାଇ ତା'ର ଆପଣାର ଲୋକଙ୍କୁ ରଙ୍ଗେଇ ଦିଏ ।

ଦିନ ପହେଇ ଆସିଲା—ପୁଣି ଦିନେ କୁକୁଡ଼ା ବୋବାଳିରେ ଗାଈ ଗୋରୁଙ୍କ ହମାରଡ଼ିରେ, ପାହାନ୍ତି ପହରର କଳରବରେ ହଠାତ୍ ଅନ୍ଧାର ଗର୍ଭ ଭିତରୁ ସେଇ ଦିନଟି ଜନ୍ମ ହେଲା, ଯେଉଁଦିନ ଗ୍ରାମ ନାଇକ କନ୍ୟା ଗାଁ-ଗଣି କରି ଯିବ ।

ସକାଳୁ ଉଠି ଗ୍ରାମ ନାଇକ ଏ ପାଖ ସେ ପାଖ ଦୌଡ଼ ଧାପଡ଼ ଲଗେଇ ଦେଲା । ସେ ନାଇକ ସତ, କିନ୍ତୁ ଆଜି ପରି ନିମନ୍ତ୍ରରେ ଗାଁର ସାତପାଞ୍ଚ ବଡ଼ ଋଇତଙ୍କ ଗୋଡ଼ ନ ଧରିଲେ ନ ହୁଏ । ପାଳିଦା ଗାଁକୁ ଲୋକ ଯାଇଛି, ସେଠୁ ବନ୍ଧୁ ସମ୍ବନ୍ଧ ଆସୁଥିବେ, ବଡ଼ ଦୂର ବାଟ, ତଥାପି ସେମାନେ ଆସିବେ ।

ଠେଙ୍ଗାର ମା ଦିନଯାକ ଘର ଲିପାଳିପିରେ ବ୍ୟସ୍ତ । ସମସ୍ତେ ଧନ୍ଦ ହେଉଛନ୍ତି, ଖାଲି ଦେଖା ନାହିଁ ଠେଙ୍ଗାର । ବାପକୁ ପଦେ କହିଦେଇ ଆଜି ନିଜେ ଗୋରୁଗୁଡ଼ାକ ଅଡ଼େଇ ନେଇ ଅଦିନଆଁ ଚରେଇବାକୁ ସେ ଚାଲିଯାଇଛି, ତା'ର ଦେଖା ନାହିଁ ।

ବାପକହିଲା ମା'କୁ—ଦେଖୁଚୁ ତ ପୁଅ କଥା, ଆଜି କେତେ କାମରେ ଘାଣ୍ଟିହୋଇ ମୁଁ ମରୁଚି, ସେ ତା ସୁଖେ ଯୁଆଡ଼େ ଇଚ୍ଛା ସିଆଡ଼େ, ସାହାଯ୍ୟ କରିବାକୁ କେହି ନାହିଁ ।

ମା ହସି ହସି ଫାଟିପଡ଼ିଲା—ସତ କଥା, ତାର ତ ସେ କଟାଠୁଁ ବଟାଠୁଁ ସବୁ କାମ ନିଜେ କରିନେଇ ବାହା ହେଉଥାନ୍ତା, ତା ନ କରି ବାପ ମା'ଙ୍କ ଉପରେ ଲଦି ଦେଇଚି, ସାମାନ୍ୟ କଥା ଏ ?

ଦୁହେଁ ହସାହସି ହେଲେ । ପୁଅ ଅନ୍ୟ ବେଳେ ଯେତେ ବେହଲ ହେଉ ପଛେ ଏତେବେଳକୁ ଟିକିଏ ଲାଜ ତାକୁ ସାଜେ, ସେତକ ଦରକାର, ଉଞ୍ଚ ମୁଣ୍ଡିଆ ଢେଙ୍ଗାପୁଅର ମୁଣ୍ଡଟି ଏତିକିବେଳେ ବାପ ମା'ଙ୍କ ଗୋଡ଼

ଚଳେ ନ ଘଷୁରିଲେ ଏତେ କଷ୍ଟ ସହି ପୁଅ ଜନ୍ମ କରି ପୁଅ ମଣିଷ କରିବା ବୃଥା । ଠେଙ୍ଗା ଠିକ୍ କରିଛି । ଯାହା ତା'ର ପୂର୍ବପୁରୁଷମାନେ କରି ଆସିଥିଲେ, ସେହିପରି ତ ।

ଖରା ଝାଇଁ ମାରିଦେଲା ବେଳେ ମସାଣିମାଳ ବଣ ଭିତରେ ଖୋଲ-ସନ୍ଧିରେ ଝରଣା କୂଳର ନଗୁଛିଆ ଚଟାଣ ଉପରେ ଠେଙ୍ଗାଜାନ ଗୁମ୍ ହୋଇ ବସି ରହିଥାଏ, ଗୋରୁମାନେ ଘୂରିଆଡ଼େ ଚରୁଥାନ୍ତି । ଆଜ ତା'ର ବାହାଘର ଠିକଣା ହେବ, ଆଜ ତା'ର ଖୁସି ହେବାର କଥା, କିନ୍ତୁ ଖୁସି କାହିଁ ? ଶୀତଦିନଆଁ ଖରା ଦେହରେ ବାଜେ ଟାଇଁ ଟାଇଁ, ତଥାପି ଗୁଡ଼ ଜାଗା ଦେଖି ଆଉଜ ପଡ଼ିଲେ ଖାଲି ନିଦୁଆ ନିଦୁଆ ଲାଗେ, ମୁଣ୍ଡ ଭିତରଟା ଘୋଳ ହେଲା ପରି । ଆଜ ସକାଳୁ ତା'ର କାହାରି ସଙ୍ଗେ କଥାବାର୍ତ୍ତା ହେବାକୁ ମନ ହୋଇ ନାହିଁ; କିନ୍ତୁ ଏଡ଼େ ନଗୁଛିଆଟାରେ ବି ଶାନ୍ତି ନାହିଁ । ଆପଣା ଉପରେ ଚିଡ଼ୁଛି ଘାରି । ଠେଙ୍ଗାଜାନ ମିଛଟାରେ 'ହେଇ ହେଇ' ରଡ଼ି ଗୁଡ଼ ପାଞ୍ଚଣ ଉଞ୍ଚେଇ ଗୋରୁଗୁଡ଼ାକୁ ଭଡ଼୍ଭଡ଼୍ ପିଟିଦେଇ ଆସେ, ସେମାନେ ପଥର ଉପରେ ଫାଟ କୁଦ ଉପରେ ଟିକିଏ ଦଉଡ଼ ଯାଇ ଚରି ଚରିକା ନିର୍ବୋଧ ଆଖିରେ ତା ଆଡ଼କୁ ଅନେଇ ରହନ୍ତି । ସେଥିରେ ବି ମନର କୋହ ମେଣ୍ଟେ ନାହିଁ । ସେ ଦୁର୍ବଳ, ବାପ-ମାଙ୍କ ବିରୁଦ୍ଧରେ ଯିବାକୁ ତା ପକ୍ଷରେ କଳ୍ପନା କରିବା ଅସମ୍ଭବ । ଅଥଚ ସମାଜର ଗତାନୁଗତିକ ବ୍ୟବସ୍ଥା, ଯାହା ତା'ର ବାପ ତା'ର ଭଲ ପାଇଁ କରି ଦେଇଛନ୍ତି, ସେଥି ପ୍ରତି ତା'ର ପ୍ରାଣ ଭିତରର ଆକ୍ରୋଶ ।

ଅନେଇଁ ଅନେଇଁ ବହୁତ ବେଳ କଟିଲା । ଆଜ ଦୁନିଆଁର ହସର ଦିନ, ଚାରି ଆଡ଼କୁ ଷ୍ଟହିଁ ଷ୍ଟହିଁ ମଝିରେ ମଝିରେ ଧୂଂଗିଆ ଧୂଆଁ ଗୁଡ଼ ଗୁଡ଼ ଦାନ୍ତ ଦେଖେଇ ଦେଖେଇ ଦୁନିଆଁ ହସି ରହିଛି, ସେ ହସ ବୁଝେ ଖାଲି ସେ,—ଠେଙ୍ଗାଜାନ, ଆଉ ସମସ୍ତେ ସେ ହସର ଖାଲି ଉପାଦାନ ସାମଗ୍ରୀ ।

ଚଢ଼େଇ ଉଡ଼ିଯାଉଛନ୍ତି, ଗୋରୁ ସୁଖରେ ତାଙ୍କର ମନ ଇଚ୍ଛା ଘାସ ଟୋକୁଛନ୍ତି, ଲଟା ଇଚ୍ଛା ଡେଣେ ତା'ର ଫୁଲ ପତ୍ରର ବୋଝ ନେଇ ମାଡ଼ି ଷ୍ଟଲିଯାଉଛି, ଖାଲି ମାଟିମେଦ ପରି ପଡ଼ିରହିଚି ସେ, ଆଉ ତାକୁ

ପୋଡ଼ ଜାଳ ତାହାଣ ଅସ୍ତିଲୁ ଉପରେ ରନ୍ଧା ମଦ ଡାଳ, ଉପ୍ ମଦ ଡାଳ, ଶ୍ରେଜ ମଉଛବ କର ବାହାଘର କରେଇ ନଉଛନ୍ତି ବାପ ମା, ଆଉ ଗାଁର ଯେତେ ଭାଇବନ୍ଧୁ ସମସ୍ତେ ।

ବେଳ ଗଡ଼ିଗଲା । ଠେଙ୍ଗାଜାନ ମାଦଳା ଆଖିରେ କାହାରିକି ନ ଚାହିଁ ଆମ୍ବଗଛ ମୂଳରେ ଡିଆଦେଇ ବସି ରହିଥାଏ । ସରୁ ରାସ୍ତାରେ ଜଙ୍ଗଲ ଉହାଡ଼ରୁ ଜକ ଜକ ଜୁଡ଼ାଟିଏ କାହାର ଦଶିଲା । ଏଠି ସମାପ୍ତି ର ବନ୍ଧନ ନାହିଁ, ଠେଙ୍ଗାଜାନ ଚହିଁକ ଉଠି ଅନେଇଲା । ଜୁଡ଼ା ତଳେ ତଳେ ମୁହଁ, ସନ୍ତୋଷ୍‌କୁମାଶ୍ରୀ । ଠେଙ୍ଗାଜାନ ଚମକ ପଡ଼ ପାଟିଟାଏ କରି ପାଗ୍ଳେଟି ଗଲା ।

କରେ ଏଠି ତୁ ? ଆଜ ତୋ ବାହାଘର ମାଁଗଣି, ଲୁଚି ଲୁଚି ତୁ ଏଠି ? ସନ୍ତୋଷ୍‌କୁମାଶ୍ରୀ ହସିଲା, ଠେଙ୍ଗାଜାନର ଗ୍ଲାନି ଭିତରଟା ଚୂନା ହୋଇଗଲା । ସନ୍ତୋଷକୁମାଶ୍ରୀ ହସିଲା,ମଲା ହସ, ଖାଲି କୌତୁକ, ଠେଙ୍ଗା-ଜାନର ଆଖି ଛଳଛଳେଇ ଉଠିଲା, ସେ ମୁହଁ ପୋଡ଼ଦେଲା । ଆହା ପିଲାଟି କାନ୍ଦୁଛି କାହିଁକ, ମୁହଁ ଶୁଖି ଯାଇଛି, ବାପା ଖାଇବାକୁ ଦେଇ ନାହିଁ କରେ ! ସନ୍ତୋଷ୍‌କୁମାଶ୍ରୀ ହସି ହସି ଠେଙ୍ଗାଜାନର ମୁହଁଟି ଟେକ ଧରିଲା, ତା' ପରେ ଏ ତା ମୁହଁକୁ ସେ ଯା ମୁହଁକୁ ଅନେଇ ଏକାଥରକେ ଦୁଇଜଣ ଯାକ କାନ୍ଦ ପକେଇଲେ । କୁଣ୍ଢାକୁଣ୍ଢି ହୋଇ କାନ୍ଦକାନ୍ଦକା ଲଟା ଭିତରକୁ ପଶିଗଲେ ।

ଘରିଆଡ଼ ଶୁନ୍‌ଶାନ୍, ମଝିରେ ମଝିରେ ଗୋରୁମାନଙ୍କ ଖସ୍ ଖସ୍ ବଣ । ନୂଆଣିଆଁ ଖବ, ଦୁହେଁ ଶାନ୍ତ ହେଲେ ଟିକଏ । ଠେଙ୍ଗାଜାନର ଓଠରେ ସନ୍ତୋଷ୍‌କୁମାଶ୍ରୀର ଲୁଣିଆଁ ଲୁହ, ସନ୍ତୋଷ୍‌କୁମାଶ୍ରୀର ଗାଲରେ ଠେଙ୍ଗାଜାନର ନାକର ପାଣି । ଠେଙ୍ଗାଜାନ ପ୍ରତିଜ୍ଞା କଲା, ସେକଥା ହେବ ନାହିଁ କୁମାଶ୍ରୀ, ଯେ ଯାହା କହୁ ମୁଁ ତତେ ଛାଡ଼ପାରିବ ନାହିଁ । ସନ୍ତୋଷ୍-କୁମାଶ୍ରୀ କଛି କହିଲା ନାହିଁ । ଠେଙ୍ଗାଜାନ କହିଗଲା ହଁ, ଜାତିର ଲୋକେ ଖେଦ ଦେବେ ତ, ଆଉ କୋଉ ଗାଁକୁ ହେଲେ ଚାଲିଯିବା, ଯୋଉଠି କେହି ନ ଦେଖିବେ, ନ ଜାଣିବେ, ନ ଚହ୍ନିବେ । ସେଠି ତୁ ଆଉ ମୁଁ ରହିବା. କୋଉ ବଣ ଭିତରେ । ଡାଙ୍ଗପଡ଼ରେ ବାଲ୍ଶାଟିଏ କରିବା, ଘରପାଖ ସଫା ହୋଇ ଟିକଏ ଜାଗା, ପାଖରେ ପାଣି ଧାରଟିଏ ଥିବ,

ସେଇଠି ରହିବା ତୁ ଆଉ ମୁଁ, କିଏ କ'ଣ କରିବ ଆମର ? ଚାଲ୍, ଏବେ ଯିବା—

ତା'ର ଉତ୍ସାହକୁ ଏକା ଫୁଙ୍କାକେ ନିଭେଇ ଦେଇ ସନ୍ତୋଷ୍‌କୁମାରୀ କହିଲା—ବାପ୍ପା ହେଲୁ କି ତୁ ? ଏ ପୃଥିବୀରେ ଏମିତି କୋଉ ଜାଗା ଅଛି, ଯୋଉ ଜାଗାରେ ଜାତଲୋକେ ଆମକୁ ଖୋଜି ପାଇବେ ନାହିଁ । ଧନେ ପାଇବେ ନାହିଁ, ଦ ଧନେ ପାଇବେ ନାହିଁ, ସେମାନେ କ'ଣ ଛାଡ଼ିଦେବେ ? ଖୋଜୁଥିବେ । ଯଦି ଆମେ ଆଉ କୋଉ ତାଲୁକାକୁ ଯେମିତି ସେମିତି ଲୁଚି ଲୁଚି ପଳେଇ ଯାଇ ପାରିବା ନା, ଖାଲି ଡାକପତ୍ରରେ ବାଲୁଣା ଖଣ୍ଡେ କରିଦେଲେ କ'ଣ ଜାଉଣି ଠିକଣା ହୋଇଯିବ ? ପଇସା କାହିଁ ? ଜମି କାହିଁ ? ଖାଦ କାହିଁ ? ଖଦ କାହିଁ ? ଲୋକେ ଜାଣିଦେଲେ କି ଲଜ୍ କି ହର୍ବର୍—ନାଇଁ ନାଇଁ, ତୁଛାକୁ ଆମେ ବାପ୍ପା ହେଇନେ ଯିନା, କିଛି ନାହିଁ କିଛି ନାହିଁ ।

ସନ୍ତୋଷ୍‌କୁମାରୀ କାନ୍ଦ ପକେଇଲା । ଠେଙ୍ଗାଜାନ କଠିନ ହେଲା । ସାହସ ବାନ୍ଧି କହିଲା, ଖାଲି କାନ୍ଦଲେ ତ ହେବ ନାହିଁ କୁମାରୀ. କିଛି ଗୋଟାଏ କରିବାକୁ ହବ ତ ! ଯିବା, ଯିବାଲୁଣ କୁମାରୀ, ଯୁଅନ୍ତେ ହେଲେ । ପୁଣି ପିଲଙ୍କ ପରି ପର୍ଭରଲ କୁଆଡ଼େ ଗଲେ ହବ କହତ ?

ସନ୍ତୋଷ୍‌କୁମାରୀ କହିଲା, ଗୋଟେ ଜାଗା ଅଛି । ଆସାମ୍ ଚ'ଲ ।

ଆସାମ୍ ଯିବା କୁମାରୀ ? ଏତେ ବାଟ ?

ଆଉ କୋଉଠିକି ଯିବା ?

ଆପଣା ଦେଶ ଛାଡ଼ି ଏତେବାଟ ଆସିବୁ ତୁ ମୋ ସାଙ୍ଗେ ।

କାହିଁକି ଆସିବ ନାହିଁ ? ତୁଇ ଏକା ନ ଆସିବୁ ଯିନା । ଆସାମ ଯିବା, ଆସାମ୍ ଡିପୋରେ କହିବା ତୁଇ ମୁଇଁ ବର ହୋଇଛୁଁ, ଗୋଟେ ପରଜା ଜାତି ଆମର, ମୁଇଁ ପରଜା ଧାଂଡ଼ୀ ପରି ଖଦ ପିନ୍ଧିନେବି । ଚାଲିଯିବା, ଦେଶ ଦେଖିବା, ପଇସା ଅର୍ଜିବା, ସେଠି ଯେତେଦିନ ମନହେବ ରହିବା, ପଇସାପତ୍ର ହେଲେ ଲେଉଟି ଆସି କୋରାପୁଟରେ କି ଜୟପୁରରେ କି କୋଉ ସହରରେ ହେଲେ ଘରବାଡ଼ି କରି ରହିଯିବା; କେତେଦିନ

ହୋଇଯାଇଥିବ; କ'ଣ କଣ କରିପାରିବ ଆମର; ସେଇ ଗୋଟିଏ ଉପାୟ ଛଡ଼ା ଆଉ କିଛି ନାହିଁ ।

ଯିବା ଯିବା ଆସାମ୍ କୁମାଶି ? ହଉ ଯିବା……କେବେ ଯିବା ତା' ହେଲେ ।

କାଲି ସଞ୍ଜ ନ ପାହୁଣୁ ଉଠି ପଳେଇଯିବା; ତୁ ବାହାରି ଆସିବୁ ଧାଂଡ଼ା ବସାଘରୁ, ବାଟ ପାଖରେ ମୁଁ ବସିଥିବି ତ, ଦୁହେଁ ଏକାଠି ଚାଲିଯିବା ।

ନୂଆ ଉତ୍ତେଜନାରେ ଠେଙ୍ଗାଜାନକୁ ସବୁ ଉଜ୍ଜ୍ୱଳ ଦିଶୁଥିଲା । କହିଲା, ହଉ ।

—୧୦—

ସେଦିନ ସଞ୍ଜରେ କନ୍ୟା ମାଗିବା ଠିକଣା କରି ରାମ ନାଇକ ଫେରି ଆସିଲା, ପାଞ୍ଚ ହାଣ୍ଡି ଲନ୍ଦା ମଦ ଓ ପାଞ୍ଚ ବୋତଲ ମଦରେ ସମୁଦି ସାଙ୍ଗରେ କଥା ଠିକଣା ହେଲା । ପାଞ୍ଚ ପଞ୍ଚାଏତଙ୍କ ଆଗରେ ସାରିଆଦାନ୍‌କୁ ଜାନ ପଚାରିଲା, ଆଲୋ ଝିଅ, ଏ ଜାଗାର ନାଇକ ତା'ର ପୁଅ ଠେଙ୍ଗାଜାନ ପାଇଁ ତତେ ମାଗୁଣି କରିବାକୁ ଆସିଛୁ । ଆମେ ପରଜା ଜାତି, ଆମର ମନଟା ଯୁଗେ ଯୁଗେ କାହାରି ଗୋତି ନୌକର ନୁହେଁ । ତୋର ଇଚ୍ଛା ହେଲେ ତୁ ଯିବୁ, ନ ହେଲେ ନାହିଁ କରିଦେବୁ, ଏବେ ହାତକୁ ହାତ ତା'ର ମଦ ଲନ୍ଦା ସବୁ ଫେରାଇ ଦେବା । ତୋର ମନର କଥା ତୁ କହିଦେ, ଠେଙ୍ଗାଜାନ ଗାଁର ପିଲା ତ, ତୋର କିଛି ଅଚିହ୍ନା ନୁହେଁ ।

ମୁହଁକୁ ତଳକୁ ପୋତି ଓଠର ଭଙ୍ଗରେ ମନର ହସ ଚାପି ସାରିଆଦାନ୍ କହିଲା, ମୋର ମନରେ କାହାରି କଥା ନାହିଁ, ମୋର ବାପ-ମାଙ୍କର ଯେପରି ଇଚ୍ଛା ସେପରି ଇଚ୍ଛା ମୋର ।

ଚାରିଆଡ଼ୁ ପାଞ୍ଚ ପଞ୍ଚାଏତଙ୍କ ମୁହଁରୁ ଆନନ୍ଦର କଳରବ ଉଠିଲା, ଆହା ହା କେଡ଼େ ସୁଧାର ପିଲା ରେ, କେଡ଼େ ସୁଧାର ପିଲାରେ । ସାରିଆଦାନ୍‌କୁ ସମସ୍ତେ ମିଣି ଗେଲ କଲେ, କିଏ ପିଠି ଆଉଁସି ଦେଲା,

କଏ ଚିବୁକଟି ଟେକ ଧଇଲା । ଗମ ନାଇକ କୁଣ୍ଢେଇ ଧରି ବାରମ୍ବାର ଗେଲକରି କହିଲା ସୁନା ପ୍ରତିମା ମା'ଟି ମୋର, ତତେ ଫୁଲ ପରି ସାଇତି ରଖିବି, ତୋର ଘର ତୋର ଦ୍ୱାର; ବୁଢ଼ାଲୋକ ବୋଲି ଭୁଲିଯିବୁ ନାହିଁ ମା, ବେଳକାଳକେ ବୁଢ଼ା ବୁଢ଼ୀକୁ ପେଜ ମନ୍ଦେ ମନ୍ଦେ ଦେଉଥିବୁ ।

ଅତି ଆନନ୍ଦରେ ହୋ ହା କରି ଗମ ନାଇକ ତା'ର ବନ୍ଧୁମାନଙ୍କୁ ନେଇ ଘରକୁ ବାହୁଡ଼ିଲା । ଆଜି ତା'ର ଫୁର୍ତ୍ତି ଦରକାର । ଜୀବନର ଚରମ ସାର୍ଥକତା ସେ ପାଇଛି । ପୁଅ ଜନ୍ମ କରିଥିଲା, ଆଜି ପୁଅ ପାଇଁ ହାତକୁ ଦୁହାତ ଠିକ୍ କରିଦେଇଛି । ତା'ର କାମ ଶେଷ । ସେ ମଞ୍ଜି ପୋତିଥିଲା, ଗଛରେ ଫୁଲ ଫୁଟିଛି ।

କାମ ଶେଷ୍ ହେଲାକି ସତରେ ? ପରଜାର କାମ ଶେଷ ହୁଏ ନାହିଁ, ସେ ଅମର, ଠିକ୍ ଏଇ ଧରଣୀ ପରି, ସେ ଚିର ନୂତନ, ଚିର ସ୍ୱାଧୀନ । ବାଟରେ ଆସୁ ଆସୁ ମଦହାଣ୍ଡି ଟେକି ଗମ ନାଇକ ଶୋଷି ଶୋଷି ପିଇଲା, ତା'ର ବନ୍ଧୁମାନେ ପିଇଲେ, ଅଧବାଟରେ ହେଲାବେଳକୁ ସେ ମାତାଲ୍ । ପାଟି କରି କରି କହୁ ଲାଗିଥାଏ ଆରେ ଆଜି ନାଚରେ ସମସ୍ତେ । ରେ ଧାଂଡ଼ାମାଝି, ଧାଂଡ଼ୀମାନଙ୍କୁ ଏକାଠି କର, ଢେଗ ଫୁକ୍ । ଆରେ ମହୁରିଆ, ତୋ'ର ମହୁରି ଆଣ୍‌ରେ, ଢାପୁ ପିଟ୍, ମହୁରି ଫୁକ୍, ନାଚ୍-ନାଚ୍-ଗାଅ । ଗହଳ ବଢ଼ିଲା, ଲୋକେ ରୁଣ୍ଡ ହେଲେ, ଗୋଷ୍ଠୀର ଜଣକର ଆନନ୍ଦରେ ଗୋଷ୍ଠୀର ସମସ୍ତେ ଖୁସିରେ ଯୋଗ ହେଲେ । ଧାଂଡ଼ାବସା ଠାରୁ ଡୁଂଗୁଡୁଂଗା ଟୁଂ ଟାଂ ହେଲା । ଧାଂଡ଼ୀମାନେ ତର ତର ହୋଇ ସଞ୍ଜର ପେଜ ଗିଳି ପକେଇଲେ, ଶୀଘ୍ର ତାଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ ନାଚ ପାଇଁ ।

ସେଇ ସଞ୍ଜରେ, ଗୋରୁଗୋଠ ଧରି ଠେଙ୍ଗାଜାନ ଲେଉଟି ଆସିଲା । ତା'ର ସେବା ପାଇଁ ମା ଅତି ତତ୍ପର ହୋଇ ଉଠିଲା । ଆଜି ଅତି ପୁରୁଣା ମାଣ୍ଡିଆ ପେଜ ସାଙ୍ଗରେ ଶିମ୍ବ ତରକାରି ଟିକିଏ ହୋଇଛି, ଘରେ ଲଙ୍କା ଅଛି ମଦ ଅଛି । ଖାରେ ବାପା ଖା, ଆହା ଏତେ ଲଜ୍ଜା କରି ଲୁଚି ଲୁଚି ଖରିଯାକ ଯେ କୋଉଠି ରହିଲୁ ରେ ପୁଅ, ପିଠି ପେଟ ନାଗି ଯାଉଛି ମୁହଁରେ, ପାଣି ନାହିଁ ।

ନାଚ ଲଗିଲା । ଠେଙ୍ଗାଜାକ ଧାଂଡ଼ା ବସାଘରେ ଶୋଇ ରହିଲା ସକାଳ ପାଇଁ ପ୍ରସ୍ତୁତ ହୋଇ । ତା'ର ଲୁଗାପଟା ଦ'ଖଣ୍ଡ ସେ ମୁଣ୍ଡତଳେ ମୁଟୁଳା କରି ରଖିଛି, ଆଉ ଦୁଇଟି ଟଙ୍କା, ଅଳପ କଚ୍ଛ ମାଣ୍ଡିଆ ପେଜ, ତା'ର ଢୁଙ୍ଗୁଡ଼ୁଙ୍ଗା ଖଣ୍ଡିକ ।

ରାତିର ଏତେ ନାଚ ମଉଜ୍ଜବ; ସବୁ ଖାଲି ତା'ର ଲୁହର ବେଢ଼ ବନ୍ଧନ । ବାପର ସ୍ନେହ, ମା'ର ଲୁହ—ସବୁ ଖାଲି ବନ୍ଧନ, ବନ୍ଧନ । ଆଜିର ଏ ଗୋଟାଏ ରାତି-ଆଉ ବଡ଼ ଜାଲ ତଳେ ପୋତି ହୋଇ ପଡ଼ିଥିବା ବଣ ଚଢ଼େଇ ପରି ସେ—କାଲି ସକାଳୁ ଜାଲ ଜଠି ଯାଇଥିବ, କାଲି ସକାଳୁ ସେ ମୁକ୍ତ ।

ରାତିସାକ ନିଦ ନାହିଁ, ଗୋଟାଏ ନିଶା, ଗୋଟାଏ ମୋହ, ତାହାରି ଭିତରେ ସେ ଭାବେଇ ଚୂଳେଇ ହଉଚି । ଭାବି ଲାଗିଛି ସନ୍ତୋଷ୍‌କୁମାରିର ଚେହେରାକୁ ବେଳୁ ବେଳ ଅପରୂପ ବେଶରେ । ତା'ର ଦେହର ପ୍ରତ୍ୟେକ ଅଂଶ ଟିକ ଟିକ ହୋଇ ଆସି ତା'ର ଆଖିକୁ ଟାଣିଧରେ, ତା'ର ଆଖି, ତା'ର ହାତ, ତା'ର ଗୋଡ଼ । ରକ୍ତମାଂସର ସେଇ ଗୋଟାଏ ଗୋଟାଏ ଖଣ୍ଡ ବିଖଣ୍ଡ ଅଂଶ କ୍ରମେ ଚଳ କାଟିହିଏ ଗୋଟା ମଣିଷଟାର ଗୋଟାଏ ଗୋଟାଏ ଠାଣିଲୁ; ତା'ର ହସ, ତା'ର କେଶବାସର ଢେଉ, ତା'ର ଦେହର ଭଙ୍ଗୀ । ସେଇ ଗୋଟାଏ ଗୋଟାଏ ଛବି ବିଗ୍‌ଦଳସ୍ଥିର ଏ ପାଖୁ ସେପାଖ ବଡ଼ ଜହ୍ନ ତଳେ ଉଜ୍ଜ୍ୱଳ କୁହୁଡ଼ି ପରି ସ୍ଥିର ହୋଇଯାଏ, ଠେଙ୍ଗାଜାକ ତହିଁରେ ଶାନ୍ତି ପାଏ, ଛବି ପାଏ, ମୁକ୍ତି ପାଏ, ତା'ର ସମସ୍ତ ସ୍ଥୂଳ ଦେହ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଫାଟିପଡ଼ ଖାଲି ଗୋଟାଏ ଉଚ୍ଛ୍ୱାସରେ, ସେ କେବଳ ଗୁପ୍ତ ପଥ ପରି ଗୋଟାଏ ଉଜ୍ଜ୍ୱଳ କଳାବିଶିଷ୍ଟ ଆକୃତି, ଆଉ ତା'ର ପ୍ରତ୍ୟେକ କଣିକା କେବଳ ଆଶା ଆଉ ଉଦ୍‌ବେଗ, ଆନନ୍ଦ ଆଉ ସନ୍ତାପରେ ସଙ୍କୁଚିତ ପ୍ରସାରିତ ସାକାର ଅନୁଭୂତି, ସାରା ଅନ୍ତରର ପ୍ରବଣତା ଅନ୍ଧାର ଭିତରେ ଡିପ ଉପରର କେଉଁ ବିରାଟ ଅଗି ଆଡ଼କୁ । ଯେଉଁ ଅଗି କେତେ ଦୂରକୁ ଦୂରକୁ ଆକାଶ ଉପରକୁ ନାଲି ଧାସର ଜାଲ ବୁଣି ଦେଇ ସୁଖଇ କୋଳେଇ ଟାଣିନଏ, ଯାହାର ନା—ସନ୍ତୋଷ୍‌କୁମାରି ।

ଠେଙ୍ଗାଜାନର ମନରେ ଘଣିଗଲ୍‌ ମୋହ, ଚିନ୍ତା ପାଇଁ ଶକ୍ତି ନ ଥିଲ୍‌ । ସେଇ ମୋହରେ ବୁଢ଼ି କେଉଁବେଳକେ ତାକୁ ନିଦ ଝୁଙ୍କିଥିଲ୍‌ ।

କୁକୁଡ଼ା ଡାକର ଅବ୍ୟବହିତ ପୂର୍ବରୁ ଠେଙ୍ଗାଜାନ ଉଠି ପଡ଼ିଲ୍‌, ଲୁଗାପଟା ସଜାଡ଼ି, ଉଣ୍ଟୁଉଣ୍ଟାଟି କାନ୍ଧରେ ପକେଇ, ଠେଙ୍ଗାଟି ଧରି ସେ ପଦାକୁ ବାହାରି ପଡ଼ିଲ୍‌ । କେହି ଉଠି ନ ଥାନ୍ତି । ଅନ୍ଧାର ହାଲୁକା ହୋଇଥାଏ, ଗାଁ କୁକୁରମାନେ ସନ୍ଧ୍ୟାକ ଭୁକି ଭୁକି ଅଳ୍ପକେ ନିଦେଇ ପଡ଼ିଥାନ୍ତି । ଗୁହାଳ ଘରେ ଫଁ ଫଁ ନିଶ୍ୱାସ ।

ଠେଙ୍ଗାଜାନ ପଦାକୁ ବାହାରିଲ୍‌ । ଧାଡ଼ି ଧାଡ଼ିକା ଘରଗୁଡ଼ିକ, ସେମାନେ ବି ନିଦରେ ଶୋଇ ପଡ଼ିଛନ୍ତି । ଚିହ୍ନା ଘର, ଚିହ୍ନା ଦାଣ୍ଡ, ଚିହ୍ନା ପରିଚ ଧୂଆଁ କୁହୁଡ଼ି, ଧୂଳି ଧୂଳିଆ ଗାଁଟି, ଯେଉଁ ଗାଁରେ ବଢ଼ି ସେ ମଣିଷ ହେଲ୍‌ । ମୁହଁରେ କାକର ବାଜ ବେଳେ ବେଳେ ଚେତାଇ ଦଉଚି, ସେ ଗାଁରେ ଚାଲିଛି । ଗାଁ କହିଲେ କେତେ କଥା, କେତେ ମୁହୂର୍ତ୍ତର ଅଳସ ଚଞ୍ଚଳ ଅନୁଭୂତି, କିନ୍ତୁ ସ୍ୱପ୍ନରେ ଚାଲିଲ୍‌ ପରି କେଉଁ ମୋହରେ ଆପେ ଅଣ୍ଡାଳ ଅଣ୍ଡାଳ ହୋଇ ଆଗକୁ ଆଗକୁ ସେ ଚାଲି ଲଗିଛି, ଭାବିବାକୁ ଅବସର ନାହିଁ ।

ବାଟ ମଝିରେ ଥିଲ ଥାଇ ଉଠି ଆସି ସନ୍ତୋଷ୍‌କୁମାରୀ ତା'ର କାନ୍ଧରେ ହାତ ଥୋଇ ଦେଇ ଚାଲିଲ୍‌, ପରଜା ଝିଅ ପରି ବେଶ ହୋଇ ଆସିଛି ସେ, ମୁଣ୍ଡରେ ଗୋଟିଏ ସାନ ପୁଟୁଳି, ଯେପରି କେଉଁ ହାଟକୁ ଯାଉଚି ।

କାନ୍ଧକୁ କାନ୍ଧ ଲଗି ପାଦକୁ ପାଦ ପକେଇ ଚରି ଚରି ହୋଇ ସେମାନେ ଚାଲି ଲଗିଲେ । ପରସ୍ପରର ସାନ୍ନିଧ୍ୟ ମନରେ ଜୋର ଦେଲ୍‌, ଚିନ୍ତା ନାହିଁ, ଦକ ନାହିଁ; ନିର୍ଭୟ ଆଜ ବାଟ ଚଳି ।

ଫିକା ଅନ୍ଧାର ଭିତରେ ଚିହ୍ନା ଚୋଟାସବୁ ପଛକୁ ପକେଇଲ୍‌, ନଈ ଗଲ୍‌, ଝୋଲ ଗଲ୍‌, ଡିପ ଗଲ୍‌, ମନରେ ଉଦ୍‌ବେଗ, ଚଞ୍ଚଳ କେମିତି ବାଟ କଟିଯିବ । ଗୋଟାଏ ଅଜଣା ଆଶଙ୍କା, ପଛେ ପଛେ ଯେପରି କିଏ

ଗୋଡ଼େଇ ଆସୁଛୁ, ଚିହ୍ନା ପକେଇ ଦେବ ନାହିଁ ତ ? ଧରିପକେଇବ ନାହିଁ ତ ?

ପାହାନ୍ତ ପହରର କୁହୁଡ଼ିଆ ଫିକା ଅନ୍ଧାର ଭିତରେ ତର ତର ହୋଇ ପହଁରି ପହଁରି ପଳେଇବା, କ୍ରମେ ଅନ୍ଧାର ଫାଟି ଆସିଲା, ଦୂର ପାହାଡ଼ର ମଥ୍ୟ ଉପରେ ଏଠି ସେଠି ଗୋଟାଏ ଗୋଟାଏ ଯେଉଁ ତରୁ ଦିଶୁଥିଲା, ତଳ ପଡ଼ି ଲୁଚିଗଲା କେଉଁ କଣରେ । ଅନ୍ଧାର ସରିଲା, ମୁହଁ ସାମ୍ନାରେ ଜଙ୍ଗଲରେ ଅସୁମାରି ବଣ, ସନ୍ଧିରେ ସନ୍ଧିରେ ପାହାଚ ପାହାଚ ହୋଇ ଲମ୍ବିଯାଇ ଥିବା ବଡ଼ା ନଣ୍ଡ, ଧାନ କ୍ଷେତ । ଆଲୁଅ ଫିଟୁ ଫିଟୁ କେତେ ଦୂରରେ ହେଲେଣି ସେମାନେ ।

ପହିଲି ଖରା ପଡ଼ି ଆସିଲା । ଗୋଟାଏ ଉଚ୍ଚ ପର୍ବତ ଉପରେ ଘାଟିବାଟରେ ସେମାନେ । ଦେଖନ୍ତୁ ଗମ୍ ଗମ୍ ସ୍ଥାନ ଫିଟିଯାଉଛୁ, ମଥ୍ୟ ଉପରେ ଗୋଟିକିଆ ଗଛ ମୂଳରେ ଖଣ୍ଡେ ପଥର ଉପରେ ସେମାନେ ବସି ପଡ଼ିଲେ । ପଛରେ କେହିଁ ଧାଇଁ ନାହିଁ, ଆଶଙ୍କା ସରିଛୁ, ତାହା ସଙ୍ଗେ ସଙ୍ଗେ ସରି ଯାଇଛୁ ଅପନ୍ତ୍ର ବାଟରେ ଘରୁ ପଳେଇ ଯିବାର ଅଧୀନତା ।

ଏଇ ଦେଖ୍ କୁମାଷୀ, ସେଇ ଢିପ ଉପରେ ଦାଢ଼ବୁଡ଼ା ଏଠିକି ବୋଲି ଦିଶୁଛି । ଫାଳେ କୁହୁଡ଼ି ଉଠିଯାଇଥାଏ, ପରିଷ୍କାର ଆକାଶ, ଖରାଆଡ଼ ଫରଚ୍ଛ । ତାହାରି ତଳେ ତଳେ ଉଭେଇ ଯାଉଥିବା ଫିକା ନାଲି ଆଲୁଅକୁ ମୁହଁ ପାଖେ ରଖି ପହିଲି ଖରାରେ ଜଳଜଳ ସବୁଜ ସତ ଦାଢ଼ବୁଡ଼ା ଦିଶୁଥାଏ । ଏତେବେଳକେ ସେମାନେ ବୁଝିଲେ ସତେ ସେମାନେ ଗାଁ ଛାଡ଼ି ଚାଲି ଯାଉଛନ୍ତି । ଦାଢ଼ବୁଡ଼ାର କୁଦତଳେ ଗାର ଗାର ଆବୁଡ଼ା ଖାବୁଡ଼ା ହୋଇ ଯେଉଁ ବହଳ ନେଳଧାର ବଙ୍କେଇ ତଳକୁ ଖସି ଅଦୃଶ୍ୟ ହୋଇଛୁ, ସେଇ ତ ସତେ ଗାଁ । ସେଇଠି ତାଙ୍କ ବାପ ମା, ବନ୍ଧୁ କୁଟୁମ୍ବ । କ ଅପରାଧ କରିଥିଲେ ସେମାନେ କାହାର । ଖାଲି ଗେହ୍ଲା ଆଦର ସ୍ନେହ ସୁଆଗ ଛଡ଼ା ଆଉ କ'ଣ ? ସେଇ ତାଙ୍କର ପିତୃପୁରୁଷ ଅମଳର ଗାଁ; ଯେଉଁଠି ଗାଁ ମଝି ଦାଣ୍ଡରେ ସାଇତା ହୋଇ ରହିଛୁ ଯୁଗ ଯୁଗର ସ୍ମୃତି । ବରଗଛ ଛାଇତଳେ ଗୋଜାପଥର । ଆଉ ଚଟାପଥର; ଠେଙ୍ଗାଜାନର

ଆଖି ଆଗରେ ଭାସିଗଲା ତା'ର ବୁଢ଼ା ବାପ ମା'ଙ୍କ ଛବି, ବାପା କ'ଣ କରୁଥିବ ? ମା କ'ଣ ହେଉଥିବ ? ଜାଣିବେଣି କ ସବୁ ! ଆଜ ନଷ୍ଟାଧା ଝୋକଟି ସାରଆଡାନ୍ । କୁଳର ବୋହୂ ବୋଲି ଯାହାକୁ ବାପ ମା ବରଣ କଲେ କାଲି । ଆଜ ସେ ଅଧାଚୋଳା ଘରଟି । ନଠେଇ ନଠେଇ ତା'ର ସୁଖ ପାଇଁ ଯାହାକୁ ତା'ର ବାପା ଗଢ଼ୁଛୁ । ପୁଅ ବଡ଼ ହେବ ଆଜ ରହିବ ।

ପାଖରେ ତା'ର ସନ୍ତୋଷକୁମାରୀ । ଏପାଖେ ସେପାଖେ ଖାଲି ବଣ ଜଙ୍ଗଲ, ଅପନ୍ତରା, ସେଠି ଚିହ୍ନା ନାହିଁ ପରିଚ ନାହିଁ, ସାହା ଭରସାର ନାଁ ନାହିଁ । ନରାଶ୍ରସ୍ନତା—ଅଜଣା ଜୀବନ !

ଆଜ ଯାହାକୁ ସେ ଛାଡ଼ି ଆସିଲା ପଛରେ ସେଇ ନର୍ଭରମୟ ଆଶ୍ୱସ୍ତି, ସେଇ ସ୍ନେହର ଆବରଣ,—ଜନ୍ମଦନରୁ ଜରଆଢନ ଯାକେ ଏଯାକେ, ବାପ ମା ବନ୍ଧୁ ବାନ୍ଧବ ।

ସୂର୍ଯ୍ୟ ଆହୁରି ଉଖଣ୍ଡେ ଉପରକୁ ଚଢ଼ିଗଲା । ଦୂରରେ ମୁସନ୍ ନଈର ପାଣିରେ ତେଜ ଜକ ଜକ କଲା, ପାସୋରା ଗାଁର ସ୍ନେହର ପରଶ ନେଇ ଅଶାତର ଉଜ୍ଜ୍ୱଳ ସ୍ମୃତିଗୁଡ଼ିକ ଆଗେଇ ଦେଇ ବକଳ ହୋଇ ଯେପରି ସେ ଧାଇଁଛୁ । ଠେଙ୍ଗାଜାନ ଥକ୍‌କା ହୋଇ ବସି ଦାନ୍ଦବୁଢ଼ା ଆଡ଼େ ଚାହିଁଥାଏ, ସନ୍ତୋଷ୍‌କୁମାରୀ ତା'ର ପାଖରେ । ସନ୍ତୋଷ୍‌କୁମାରୀର ଅସ୍ତିତ୍ୱ ସେ ପାସୋରି ପକେଇଥାଏ, କପାଳର ଝାଳ କାନତଳର ଝାଳ ମଶିଗଲେ ବି ଠେଙ୍ଗାଜାନର ଆଖିର ଝାଳ ନଗିଡ଼ି ଲଗିଥାଏ, ଆଖିର ଲୁହରେ ଖରା ଧାସ ଲଗି ଯେତେବେଳେ ସେ ଅନ୍ଧ ପରି ହେଲା, ତା'ର ଚେତନା ଆସିଲା ସନ୍ତୋଷ୍‌କୁମାରୀର ଝାଙ୍କରେ । ଉଠ୍, ଏତେ ଚଞ୍ଚଳ ଥକଗଲୁ, ବସିଗଲେ ବେଳହେବ । ପୁଣି କଏ ଖୋଜ ଆସୁ ଆସୁ ପହଞ୍ଚଗଲେ ସେତେବେଳେ ? ସନ୍ତୋଷ୍‌କୁମାରୀର ମୁହଁ ମଧ୍ୟ ଗମ୍ଭୀର ହୋଇଯାଇଥାଏ, ଏଇ ସକାଳବେଳେ ସେ ତା'ର ପୋଷା ଛୁଆଟିକୁ ଖୁଆଇ ଥାଆନ୍ତା । ବାପ ମା ଆଜ ଏ ଠେଙ୍ଗାଜାନ କେତେ ଛାତି ନର୍ଭର କରିପାରେ ସେ । କନ୍ତୁ ସେ ସ୍ତ୍ରୀ, ପୁରୁଷ ନୁହେଁ । ଆରେ କ ସୁନ୍ଦର ଫୁଲ ପେନ୍ଥାଏ ଫୁଟିଛି ଏଠି ସେ ଦଉଡ଼ିଯାଇ ଫୁଲ ପେନ୍ଥାଟି ଆଣି ଖୋସାରେ ଖଞ୍ଜିଦେଲା, ଠେଙ୍ଗାଜାନର ହାତକୁ

ଆପଣା ହାତରେ ଛନ୍ଦ ଦେଇ ଉପରକୁ ଉଠାଉ ଦେଇ କହୁଥିଲା, ଉଠ୍ ଉଠ୍ ଥକି ଗଲେ ହେବନି, ଆଜି ଯେମିତି ହେଲେ କୋସପୂର୍ ପହଞ୍ଚିବାକୁ ହେବ । ଠେଙ୍ଗାଜାନ ଦୀର୍ଘଶ୍ୱାସ ପକେଇ ଉଠିପଡ଼ିଲା; ଏଣିକି ପର୍ବତର ଆରପଟ, ଖାଲି ଗଡ଼ାଣି, ଆଉ ଲୁଲ୍ଲାଗାଁର ଆକାଶ ସୁଦ୍ଧା ଦିଶିବ ନାହିଁ ଏଣିକି ।

ଉଠାଣିର ସବା ମୁଣ୍ଡଉପରେ ସେମାନେ ଠିଆହେଲେ, ଠେଙ୍ଗାଜାନ ସଳଖ ଦୀର୍ଘ ଦେହ, କାନ୍ଧରେ ଊଂଗ୍ଊଂଗ୍ ଆଉ ସାନ କାଉଡ଼ି ଭରଟିଏ, ଆଉ ହାତରେ ବିଶାଳ ଠେଙ୍ଗା, ତା'ର ପାଖକୁ ଲାଗି ସନ୍ତୋଷ୍‌କୁମାରୀ, ଗୋଟାଏ ହାତ ଠେଙ୍ଗାଜାନର ବାହା ଭିତରେ, ମୁଣ୍ଡ ଉପରେ ଗ୍ଲୋଟ ପୁଟୁଳାଟିଏ ।

ଦାଦିବୁଢ଼ାକୁ ମନେ ମନେ ସେମାନେ ନମସ୍କାର କଲେ, ଅଜଣା ବାଟକୁ ମୁହଁକରି ଅକୂଳର ପଥୁକା ଯୋଡ଼ିକ ଡାଲୁଏ ଡାଲୁଏ ଗଡ଼ପଡ଼ିଲେ ତଳକୁ, ସକାଳର ପହିଲି ଖବରେ ।

—୧୧—

କନ୍ୟା ମାଂଗଣି କରିଥିବା ସଞ୍ଜରେ ଗ୍ରାମ ନାଇକ ଦାଦିବୁଢ଼ାକୁ ଭୁଲି ନ ଥିଲା । ତେଣୁ ସକାଳୁ ଦାଦିବୁଢ଼ା ସାମ୍ନାରେ ପଡ଼ି ରହିଥିଲା ଭଙ୍ଗା ହେଲୁଆ ଖଣ୍ଡେ, ସେଥିରେ ବାସି ଭାତ, ଭୂଇଁରେ ଠାଏ ଉଦା, ସେଠି ମଦ ଢଳା ହୋଇଥିଲା । ଠାଏ ଥୋଡ଼ାଏ ଫୁଲ, କାକର ଖାଇ ସେ ସଜ ଅଛି । ଆଉ ପାଖରେ ଗୁଡ଼ାଏ କୁକୁଡ଼ା ରୁମ ଆଉ ପର । ସେତିକି ଦେଇ ଗ୍ରାମ ନାଇକ ମନ ଭିତରେ ଠାକୁରଙ୍କୁ ଧନ୍ୟବାଦ ଜଣେଇଥିଲା । ମାନସିକ କରିଥିଲା, ସବୁ ଶୁଭ ହେଉ, ସବୁ ମଙ୍ଗଳ ହେଉ, ଆକାଶରୁ ମହୁ ବରଷୁ । ସକାଳୁ ଦାଦିବୁଢ଼ା ମୁହଁପାଖେ ମାଛି ବସିଥିଲେ, ମୁଣ୍ଡ ଉପରେ କାଉ ବସିଥିଲା, ଦାଦିବୁଢ଼ା ଶୁହିଁ ରହିଥିଲା ଭଲ ପିଲାଟିଏ ପରି ।

ଗାଁ ଜଗୁଆଳ, ଗୋଷ୍ଠୀ ଜଗୁଆଳ ଠାକୁର ସେ । ସମସ୍ତିଙ୍କ ହାନିଲାଭ ପାଇଁ ପରା ଦାୟୀ । ତେଣୁ ଏତେ ମାନ୍ୟ ଏତେ ଡର ତାକୁ, ତାହାରି ପାଖରେ ଏତେ ଉତ୍ସବ ଆଉ ବାଇଦ ବାଜଣା । ନିତି ସକାଳ ବେଳେ କିଏ ଦାନ୍ତକାଠି ଚୋବେଇ ଚୋବେଇ, କିଏ ଗଗ୍ରା ମାଠିଆ ଧରି

ଏଇ ମୁଣ୍ଡିଆ ତଳେ ସ୍ତ୍ରୀ ପୁରୁଷ ମୁଖନ୍ ନଈକୁ ଗଡ଼ଯାଆନ୍ତି । କାହାର କେତେ ସୁଖ ଦୁଃଖ । ଯାହାର ପୁଅ ରୋଗରେ ପଡ଼ିଥିଲା, ପରେ ଭଲ ହୋଇଗଲା, ଯାହାର ଗାଈ ହଜିଥିଲା, ଖୋଜିବାରୁ ମିଳିଗଲା, ଯାହାର ପାଚିଲା ଯାହାର ଫଳିଲା ସମସ୍ତଙ୍କ ହାଣ୍ଡି ଅଭିଷିକ୍ତ ସେ, ଅନାଦି କାଳର ଦେବତା ଦାଦି ବୁଢ଼ା, ସେଇମାନେ ତା'ର ମହିମା ଗାଇବେ । ପୁଣି ଏଇ ଦଳରେ ଯାଆନ୍ତି ସେଇମାନେ, ଯାହାର ପୁଅ ଏଲୁଡ଼ି ଜ୍ୱରେ ମଲା, ଯାହାର ଗାଈ ଗୁହାଳରୁ ହେଇଗଲା, ଯାହାର ଧାନକ୍ଷେତ ଚଢ଼ା ପାଣିରେ ଖାଇ ହୋଇଗଲା; ଏମାନେ ମଧ୍ୟ ଉପାଧିଆ ପଡ଼ିଥିଲେ । ଠାକୁର ଶୁଣି ନାହିଁ— ଏତେବଡ଼ କଥା କହିଦେବାକୁ କାହାର ମୁଣ୍ଡ ନାହିଁ । ଆହୁରି ଦିନକାଳ ଅଛି । ଏକା ଦିନକେ ସବୁ ପିଲା ମରିବା, ସବୁ ଗାଈ ହଜିବା ଶେଷ ନୁହେଁ । ତେଣୁ ଏ ହତଭାଗ୍ୟମାନେ ଆପଣାର ଫଟା କପାଳକୁ ଦୋଷ ଦିଅନ୍ତି । ଦାଦିବୁଢ଼ା ଉପରେ ଅଭିମାନ କରି କରି ତାହା ଉପରେ ନିଜର ବିଶ୍ୱାସ ବଢ଼ାଇ-ନିଅନ୍ତି । ଆହୁରି ଲାଞ୍ଚ ଦେଇ ଆହୁରି ନେହୁରି ହୋଇ ଭବିଷ୍ୟତ ପାଇଁ ସୁବିଧା କରିନେବାକୁ ଲାଗିପଡ଼ନ୍ତି । କାରଣ ଏମାନେ ମଣିଷ । ମଣିଷ ଆସନ୍ତା କାଲି ପାଇଁ ଆସନ୍ତା ପରକାଳ ପାଇଁ ଅଣ୍ଟା ଭିଡ଼ି ଖଟୁଥାଏ, ହେଲେ ପଛେ ଆସନ୍ତା କାଲିଟା ଗତ କାଲି । ଆଜି ଦାଦିବୁଢ଼ା ଠାକୁର, ସବୁ ଉପଦ୍ରବକୁ ଏକାଠି କରି ଗଣ୍ଠିରି ବାନ୍ଧିବା ତା'ର ଧର୍ମ, ତା'ର ସବୁ ନଗଦ ।

ତେଣୁ ହୁଙ୍କା ବୁଢ଼ା ବଢ଼େ । ମୁଣ୍ଡବଥା ପାଇଁ, ଜରି ପାଇଁ, ପିଲା ହେବା ପାଇଁ, ଯେତେ ତା'ର ବିଭୂତି ନେଇଗଲେ ସୁଧା କୁଆଡ଼ୁ କୁଆଡ଼ୁ ଖର୍ଚ୍ଚ ଉପରେ ସେ ପୁଣି କ୍ଷତିପୂରଣ ଉଠେଇ ନିଏ ।

—୧୨—

ସାରିଆଦାନ୍ ରାତି ଚଞ୍ଚଳ ଉଠିଥିଲା, ରାତିଯାକ ସ୍ୱପ୍ନ ଉପରେ ସ୍ୱପ୍ନ । ସକାଳୁ କେମିତି ତା'ର ମନେ ହେଲା, ଠେଙ୍ଗାଜାନକୁ ଦେଖିବାକୁ ତା'ର ମନ ଡାକୁଛି, ଦେଖା ଆପେ ହେବ । ହୁଏତ ନଈପାଣିକୁ ଆଜି ସେ ଗଡ଼ିଗଲେ ନଈକୂଳରେ ଅତଡ଼ା ଉପରେ ଠେଙ୍ଗାଜାନ ଠିଆହୋଇ ଦେଖୁଥିବ । ସେ ଦେଖୁ ଆପତ୍ତି ନାହିଁ, ଠେଙ୍ଗା ତା'ର ମାଲ ସେ ଠେଙ୍ଗାର

ମାଲ । ତାକୁ ପଚରା ହୋଇଥିଲ ପୁଣି ସେ ଠେଙ୍ଗାଜାନକୁ ଗୁହେଁ କ ନାହିଁ । କେତେ ହସକଥା ଟା—ସ୍ୱା ପୁଣି ଲୋକେ ପଚ୍ଚରନ୍ତି ନା, ଛୁ ଛୁ ।

ନା, ପାଣିକୁ ଗଲବେଳେ ଠେଙ୍ଗାଜାନ ସାଙ୍ଗେ ଦେଖା ହୋଇ ନାହିଁ, କେମିତ ବା ଦେଖାହେବ, କାଲିର ଏତେବଡ଼ ଘଟନାଟା ଭୁଲିହୁଏନା ? ଠେଙ୍ଗାଜାନ ପୁରୁଷ ପିଲ, ମନ ଆନନ୍ଦରେ ମଦ ପିଇବାକୁ ତା'ର ଅଧିକାର ଅଛି । କାଲିର ଏତେବଡ଼ ଘଟନା—ପିଇଥିଲେ କ'ଣ ହେଲ ଢୋଲ ଫଟେଇ ମଦ—ବେଶୀ ପିଇଲେ ଡେଶରେ ନଦଗ୍ୱାଙ୍ଗେ ପଗ୍ ନା ?

ହଁ ସତେ ତ, ଠିକ୍ ଲଠିଏ ବେଳହେଲ ବେଳକୁ ସାହା କମେଇ ଦେଇ ଥରେ ଡାକ ଡାକକା ଠେଙ୍ଗାବୋଉ ଏଇ ବାଟେ ଯାଇଥିଲ, ପୁଣି ତା'ର ବାପା ଗ୍ରାମ ନାଇକ ମଧ୍ୟ ।

ଆରେ ଠେଙ୍ଗା, ଠେଙ୍ଗା -ଠେଙ୍ଗା ଅଛୁ କ ସ୍ୱାଡ଼େ ?

ସାଉଆଦାନ୍ ବାଳଗୁଡ଼ାକ ମେଲେଇ ଦେଇ ବସି ଜଡ଼ାତେଲ ଟିକଏ ଘଷି ହଉଥିଲ ମୁଣ୍ଡରେ । କେତେ ଲଜ କଥା ସତେ, ଏଇ ବାଟେ ଖାଲି ଠେଙ୍ଗା-ଠେଙ୍ଗା । ଏମାନେ କ'ଣ ମନେ ମନେ ଭଗୁଛନ୍ତି ତାଙ୍କ ପୁଅଟିକ ସାଉଆଦାନ୍ କୋଉଠି ଲୁଚେଇ ରଖି ଗପାମାଉ ବସିପଡ଼ିଛି । ଏଇ ବାଟେ ଗଲାବେଳେ ଖାଲି ବେଶୀ ବେଶୀ ହୁଉ, ଆରେ ଠେଙ୍ଗା— ଠେଙ୍ଗାରେ— । ହସ ମାଡ଼ିଲ ଘଉ, ଠେଙ୍ଗାଜାନକୁ କେବେ ଲୁଚେଇ ହବ ନା ? ନନ୍ଦଗାଁ ହାଟରେ ଡୁମାଗୁଡ଼ା ହାଟରେ, ଏତେ କଥା କାହିଁକି ଏତେ- ବଡ଼ ଡୁମୁଡପୁଟ୍ ହାଟରେ ସୁଦ୍ଧା ଠେଙ୍ଗାଜାନ ଯୋଉଠି ଥିଲେ ବାଉହୋଇ ପଡ଼ବ । ତାକୁ ଲୁଚେଇବ କଏ ?

ଏଇ ଲୁଚେଇବା କଥା ମନେ ପଡ଼ିଗଲ । ରାତିର ସ୍ୱପ୍ନ ମନେପଡ଼ିଲ ଦେହଟା ଅବଶ ଲଗିଲ ଆନନ୍ଦରେ, ମନ ଭିତର କେତେ ସଲ ସଲ କୁତୁ କୁତୁ ସହୁଛି, ପୁଣି ସେଇଆ । ସାଙ୍ଗେ ସାଙ୍ଗେ ଅହେତୁକା ରାଗ ବି ପଡ଼ିଲା ଠେଙ୍ଗାଜାନ ଉପରେ, ଓଃ ଦେଖ ଏତେ ବେଳହେଲାଣି, ସୁଙ୍ଗୁ ସୁଙ୍ଗୁ ହୋଇ ଖଣ୍ଡିକାଶ ମାଉମାଉକା ଯାଇଥିଲେ ହେଉଏ ଏବାଟେ କ'ଣ ହୋଇପାଉଥାନ୍ତା ? ଭଲ ଲୋକ ।

ପେଜ ଖାଉ ଖାଉ—ଦୂରରୁ କିଏ ଗୋଟାଏ କଟାକ କରି କର୍କଶ ଗଳାରେ ଡାକୁଛି—ହଁ ସେ ଉମ୍‌ସାହାର ଅଲେଇଝରିଆ ଚ, ଏଁ ।— ସକାଳୁ ନାହିଁ ସେ···ନା ଏମିତ ଚ କୁଆଡ଼େ ଯାଏ ନାହିଁ···ପେଜ୍ ବେଳ ହେଲ, କୁଆଡ଼େ ଗଲ କୁମାଣ୍ଡ—। ସନ୍ତୋଷକୁମାଣ୍ଡ, ତା'ର ଝିଅ । କୁଆଡ଼େ ବା ଯାଇଚ, ଗଲେ ଭସିଗଲ କ'ଣ ? ଘର ପୁଲେଇ ଟୋକାଟାଏ ସେ । ଖାଲ ଧାଂଡ଼ାମାନଙ୍କ ପିଛୁ ଟେକ । ଏମିତ ମୁହଁଟାକୁ ଅନେଇଁ ହସିରହେ ସେ କ'ଣ ? ଆଉ ଧାଂଡ଼ା ଦେଖିଲେ ଆପଣା ଦେହ ମୁଣ୍ଡକୁ ଜାଣି ଜାଣି ନଘାରଖେ ନାହିଁ ସେ । ଉମ୍ ଲୋକର କଥା ଚ । ଛି !

କେଜାଣି କାହିଁକ ଘୁଡଟା ଦବିଗଲ ଟିକଏ ତା'ର । ପେଜ ଅଧାଖିଆ କରି ସେ ଛାଡ଼ିଦେଲ । ଘର ଭିତରେ ବସି ରହି ତା'ର ଲୁଗାପଟାଗୁଡ଼ାକ ପେଡ଼ିରୁ ଖୋଲ ସଜଡ଼ା ସଜଡ଼ି କଲ । ତା'ପରେ ଫାଣି ମଢଏ ତେଲୁଲ ଟିକଏ ଧରି ନଠେଇ ନଠେଇ ତା'ର ପିତଳ ଅଳଙ୍କାର-ତକ ମାଜିବାକୁ ଲଗିଲ । କାମରେ ନାଁ ସିନା, ହାତ ଆପେ ଆପେ ଅଳସେଇ ହୋଇ ଯାଉଥାଏ, ମନ ଭିତରେ କେତେ ସାତ ପାଞ୍ଚ ।

ମୁଣ୍ଡେ ବେଳ ଗଡ଼ ଆଡ଼ୁର ଲଠିଏ ବେଳ ଚଢ଼ିଛି । ପ୍ରଥମେ ଫୁସୁରୁ ଫୁସୁରୁ ହୋଇ ତା'ପରେ ବଡ଼ ପାଟିରେ କଥା କହି କହି ତର ତର ହୋଇ ସାହାଲୋକେ ଏକମୁହାଁ ହୋଇ ପଲ ପଲ ହୋଇ ଧାଇଁଗଲେ । ସାଙ୍ଗେ ସାଙ୍ଗେ କାନ୍ଦଣା ଶୁଭିଲ । ଏକା ମୁହଁରେ କାନ୍ଦଣା ଆଉ କଥା । କିଛି ବୁଝି ହେଉନାହିଁ । ହଁ, ସେଇ ମୁଣ୍ଡରେ ତ ଠେଙ୍ଗାଜାନର ଘର । ତାଁର ସେ ମୁଣ୍ଡୁରୁ ଉମ୍‌ସାହାରୁ ବି ସେହିପରି କାନ୍ଦଣା ଶୁଭିଲ । ଛାତି ଧଡ଼୍ ଧଡ଼୍ ହେଉଥାଏ । ଏତିକବେଳେ କଲକାଲଆ ହୋଇ ଦଉଡ଼ି ଆସି ସଖୀ ସାରିଆଫୁଲ କହିଦେଇ ଚାଲଗଲ, ଶୁଣିଲୁଣି ଲୋ, ତୋ ବର ଠେଙ୍ଗାଜାନ ସେ ସାହିର ସନ୍ତୋଷ୍‌କୁମାଣ୍ଡ ଉମୁଣୀକୁ ଉଦୁଲଆ ନେଇ କୁଆଡ଼େ ପଳେଇ ଯାଇଚ ଯେ ତାଙ୍କ ଘରେ କାନ୍ଦଣା ଲଗିଚ—ମୁଁ ଯାଉଚ—ତୁ ଯିବୁ କ ?

ଏଁ—

ସାରିଆଦାନ୍‌ର ମୁହଁ କଳାକାଠ ପଡ଼ିଗଲ ।

ଘର କବାଟଟିକ ଦର୍‌ଦ ଆଉଜା କରିଦେଇ କଇଁ କଇଁ ହୋଇ ସେ କାନ୍ଦିଲା ।

ଦରଛୋଟା ଘର । ଆଗଟାରେ ଗୋଟାଏ ବଡ଼ କାଠ ଗଣ୍ଡିଗ ଉପରେ ସେଇ ଘର ଆଡ଼କୁ ଅନେଇଁ ଆଁ'ଟାଏ କରି ନହାତ ଅଳସୁଆଟା ପରି ଗମ ନାଇକ ଗେଜ୍ ବସିଥାଏ । ଅଧା ତିଆରି ଘର, ଖାଲି କାନ୍ଥ-ଗୁଡ଼ାକ ଉଠିଛି, ସେ ବ ପୂର୍ଣ ହୋଇ ନାହିଁ । ଘର ଆଗରେ ଠାଏ ମାଟିକାଦୁଅ କୁଢ଼, ଆଉ କେତେ ଛେଲି ପାଟିଆ ବାଉଁଶ । ଅଳ୍ପ ଘୁଞ୍ଚ଼ ଗୋଟାଏ ସାନ ପାହାଡ଼ ପରି ଫିଶଘାସ ଗଦାମରି ହୋଇ ରହିଛି । ତା'ର ଷୁରିପାଖେ ବାଉଁଶ-ଜାଳର ଘେରେଇ । ତା'ର ମନ ଇଚ୍ଛା ସେ ଘର ତୋଳୁଥିଲା । ହେନେ ଏହା ସମ୍ପୂର୍ଣ୍ଣ ହୋଇଥାନ୍ତା, ଘର ପ୍ରତିଷ୍ଠା ହୋଇଥାନ୍ତା, କାନ୍ଥ ଆଉ ଚଳ କଳାମାଟିରେ ଧୋବମାଟିରେ ରଙ୍ଗ-ମାଟିରେ ପଟିପଟିକିଆ ହୋଇ ଲିପା ହୋଇଥାନ୍ତା ।

ଘର ହୋଇଥାନ୍ତା, ଷ୍ଟଳଯାକ ମାଡ଼ିଥାନ୍ତା ଲାଉ, କୁମୁଡ଼ା, ଘର ପିଠିରେ ଶିମ କଲରା ।

ଠେଙ୍ଗାଜାନର ସାରିଆଦାନ୍‌ର ଘର, ଘର ଚଟାଣର ଗୁଆଁ ଫେଷା ଗାଡରେ ସାରିଆଦାନ୍ ମାଣ୍ଡିଆ ଫେଷୁଥାନ୍ତା, ସୁଆଁ ଫେଷୁଥାନ୍ତା । ଏଇ ଘରର ଖୁଲରେ ଘରଚଟିଆ ବସା କରିଥାନ୍ତେ ଉଡ଼ି ବୁଲୁଥାନ୍ତେ ଫଡ଼ର ଫଡ଼ର । କବାଟରେ ଭଅଁର ଘର କରି ଛୁଆ ପାଳିଥାନ୍ତା । ଦୁଆରେ କାଳୁ କୁକୁର ।

ଆଉ ଏପାଖ ସେପାଖ ହୋ'ନ୍ତି ଡନୋଡି ଅଜଟ ଛୁଆ, ବାଳ ଫୁଷ୍ଟ ଫୁରୁ, ପେଟଯାକ ଧୂଳି, ପାଟିରେ ନାଳ ଆଉ ନାକରେ ସିଙ୍ଘାଣି ଧାର । ସେମାନେ ଏଇ ଘରର ମଣିଷ ହୋଇଥାନ୍ତେ, କେତେ ନୁଟୁକୁଟୁ ଲଗେଇ ଥାଆନ୍ତେ । କିଏ ବାପର ମାଳ ଓଟାରୁ ଥାନ୍ତା, କିଏ ମା'ର ପଣତ ଟାଣୁଥାନ୍ତା । ଅସନା ଅପୋଷ୍ଟ ଚଞ୍ଚଳ ଆଖି ଛନ ଛନ କାନ ପାହାଡ଼ ଦେଶର ପିଲା ।

ସେମିତି ବସି ବସି ଗମ ନାଇକ ଆଁ'ଟାଏ କରି ଅନେଇଁ ରହିଥାଏ । ତା'ର ଘୁଇଟା କ୍ରମେ କ୍ରମେ ସାନ ହୋଇ ହୋଇ ପୁଣି କୁଆଡ଼େ

ମିଶିଯାଏ । ତା'ର ଆଁ ବୁଜେ ନାହିଁ । ବେଳେ ବେଳେ ବାଘୁଣୀ ପରି ଧୂଳିଧୂଳିଆ ମୁକୁଳା ବାଳ କରି ଦୁ' ହାତର ନଖରେ ଗାଲଗୁଡ଼ାକ ଆମ୍ପୁଡ଼ି ଆମ୍ପୁଡ଼ି ରକ୍ତ ପିଚି ପିଚି ଚିତ୍କାର କରି କାନ୍ଦି କାନ୍ଦି ଠେଙ୍ଗାର ମା ପଦାକୁ ଦୌଡ଼ିଆସେ । ରାମ ନାଇକର ସ୍ୱପ୍ନ ଭାଙ୍ଗେ । ପିଲାଙ୍କ ପରି କାନ୍ଦି କାନ୍ଦି ମୁଣ୍ଡକୁ ଝାଙ୍କି ଦେଇ ଦୁ'ଆଣ୍ଠୁ ଭିତରେ ମୁହଁଟାକୁ ମାଡ଼ି ଦେଇ ସେ ବସି ପଡ଼େ । ପିଠିର ଝାଙ୍କରେ ମୋଟା କାଠ ଗଣ୍ଡିଟା ଦୋହଲିଯାଏ । ମେଞ୍ଚମାଞ୍ଚ ହୋଇ ଗୋଟାଏ ଗୋଜାପଥର ପରି ଦିଶେ ସେ । ତଣ୍ଟିରୁ ଶବ୍ଦ ବାହାରେ ନାହିଁ, ଖାଲି ଗୁଡ଼ାଏ ଆଁ ଉଁ—ଆଁ ଉଁ—ଆଁ ଉଁ, ଗୁଳି ଚୋଟର ଘା' ସହିଥିବା ଗୋଟାଏ ବଣ ଜନ୍ତୁର ବୋବାଳି ପରି ।

ସାତଦିନ ବିତିଗଲାଣି ସବୁଦିନେ ଏହିପରି ସେ । ଗାଁ ଲୋକେ ବାଟେ ବାଟେ ଗଲାବେଳେ ସିଆଡ଼େ ସେ ଅନାଏଁ ନାହିଁ, ପିଲାଏ ଡରି ଡରି ଦେଖି ଚାଲିଯାଆନ୍ତି । ବଡ଼ ରଇତମାନେ, ବାରିକ ଗୁଁଟେରି ଡମ୍ ପାଖକୁ ଆସି ସହାନୁଭୂତି ଦେଖେଇ କେତେ ବୁଝେଇ କହନ୍ତି, ନାଇକ ! ନାଇକ ! ଯାହା କପାଳରେ ଲେଖାଥିଲା ତା' ତ ହେଲା, ଆଉ ଝୁରୁଚୁ କାହିଁକି ? କେତେ ଦିନ ଏମିତି ଉପାସ ଭୋକରେ ପଡ଼ିଥିବୁଟି ଆହା—ଉଠ—ଉଠ—ଖିଆପିଆ କର, କାମ କମାଣି କର, ଯେମିତି ସେମିତି କରି ସାନ ଭୋଜଟିଏ ହେଲେ କରିଦେଇ ଜାତି ହୋଇପଡ଼୍—ଉଠ୍ ଭାଇ ଉଠ୍ । ରାମ ନାଇକ କାହାରିକି କଥା କହେ ନାହିଁ । ମୁଣ୍ଡଟି ଟେକି ଟଣା ଟଣା ପାଗଳା ଆଖିରେ ଅତି ବିକଳହୋଇ ଏମିତି ଅନେଇଁ ରହେ, ତା'ର ମୁହଁକୁ ଦେଖିଲେ ଛାତି ଫାଟିଯିବ । ହରିଜାନ ବି' ସାଙ୍ଗୀ ନାଇକର ବିକଳ ଦେଖି ପାଖକୁ ଆସେ । ନାଇକ କାନ୍ଧରେ ହାତ ପକେଇ ଦେଇ କଅଁଳେଇ ଡାକେ, ନାଇକ ଭାଇ ନାଇକ ଭାଇ ! ରାମ ନାଇକ ମୁହଁକୁ ତଳକୁ ପୋତି ଖୁଁ ଖୁଁ କରି କାନ୍ଦେ । ଥୁପ ଗୁଡ଼ାକ କାଢ଼ି କାଢ଼ି ଭୁଇଁଟା ଓଦା କରିଦିଏ । ଅତି ବିରକ୍ତ କଲେ କାନ୍ଦି କାନ୍ଦି କହେ, ନାଇଁ ନାଇଁ ନାଇଁ ।

ଖବର ମିଳି ସାରିଲାଣି, ଠେଙ୍ଗାଜାନ ସାରିଆହାନ୍ କୋରାପୁଟରୁ ଆସାମ ଡିପୋ କରିଆରେ ଆସାମ୍ ଚାଲିଗଲେ । ପିଲାମାନ୍ ଡମ୍ ଦଶମନ୍ତ-ପୁର ଗାଁର ଚାଉଳ ନେଇ ବେପାର କରିବାକୁ ଯାଇଥିଲା, ଏଇବାଟେ

ଫେରିଲା ସେ ବି କହୁଥିଲା । ଯେଉଁମାନେ ଖୋଜିବାକୁ ଯାଇଥିଲେ ସେମାନେ ବି କହୁଥିଲେ । ସେ ଦୁହେଁ ଚାଲିଗଲେ, ଯେପରି ଯାଆନ୍ତି ବଣି ଦେଶର କେଜାଣି କେତେ ଲୋକ, କିଏ ସାହୁକାର ଦାଉରୁ ବର୍ତ୍ତିବାକୁ, କିଏ ଖାଲି ପଇସା ରୋଜଗାର କରିବାକୁ—ଯାଆନ୍ତି ଧାଁ'ରି । କିଏ ବା ସେ ଦେଶରେ ଘର ଦୁଆର କରି ରହନ୍ତି । କିଏ ମରନ୍ତି । କେତେ କେତେ ଲୋକ ଫେରି ଆସନ୍ତି ପୁଣି ।

ରାମ ନାଇକ ଅବୁଝା ହୋଇ ବାୟା ପରି ଶୋକ କଲା । ଗାଁ ଲୋକ ଆବାକାବା ହେଲେ । ସତ କଥା, ତା'ର ପୁଅ ଗଲା । ତା'ପରେ ତା' ଘରେ ନାଇକ ପଣିଆ ଆଉ ରହିବ ନାହିଁ । ତା'ର ସବୁ ଆଶା ଭରସା ଗଲା । ତା'ର ଜାତି ଗଲା । କିନ୍ତୁ ନାଇକ ଘୁଙ୍ଗା ହୋଇ ବସି ରହିଲେ ଗାଁର ଭଲମନ୍ଦ ବୁଝିବ କିଏ ? ଖଜଣା ଅସୁଲ୍ କରିବ କିଏ ? ନିଶାପ କରିବ କିଏ ? ଅଧିକାରୀମାନେ ଆସିଲେ ତାଙ୍କୁ ଚର୍ଚ୍ଚା କରିବ କିଏ ? ଲୋକେ ବେମୁରବିଆ ହେବେ, ଗାଁ ନଶିଯିବ ।

ଦିନୁ ଦିନ ଯହୁଁ ହେଲା, ଗାଁ ଲୋକେ ଏହିପରି ଭାବି ଠିକ୍ କଲେ ଏଥର ଗୋଟାଏ ପ୍ରତିକାର ଆବଶ୍ୟକ । ରାମ ନାଇକର ଘର ଉପରେ କେଉଁ ପ୍ରେତାତ୍ମାର ଦୃଷ୍ଟି ପଡ଼ିଛି । କେଉଁ ଅଜଣା ଡୁମା ସେ, ଗାଁର ହିତ ପାଇଁ ନାଇକକୁ ମୁକ୍ତ କରିବାକୁ ପଡ଼ିବ । ସେ ଦୁଃଖର ଡୁମାକୁ ତଡ଼ିବାକୁ ପଡ଼ିବ । ପ୍ରତିକାର ଆବଶ୍ୟକ । ଏଲିଓ ପ୍ରାଚୀନ ଖ୍ରୀଷ୍ଟାନ୍ ଲୋକ, କିନ୍ତୁ ସେ ହିନ୍ଦୁ ନାଇକକୁ ଭଲ ପାଏ । ରାମ ନାଇକକୁ ଭଲ ନ ପାଇବ ଗାଁରେ ଏପରି କିଏ ଅଛି ? ତା' ପରେ ଠେଙ୍ଗାଜାନି ଅଲେଇବରିଆର ଝିଅକୁ ନେଇ ପଳାଇବା କଥାରେ ଆପଣା ଆପଣା ଭିତରେ ଗୁରୁ ପାଷ୍ଟର୍ ପ୍ରାଚୀନ୍ ନିତାନ୍ତ ଅସନ୍ତୁଷ୍ଟ ମଧ୍ୟ ହୋଇ ନାହାନ୍ତି । ସେମାନେ ବିଶ୍ୱାସ କରନ୍ତି ଆଜି ନ ହେଲେ ସୁଦ୍ଧା କେଉଁଦିନ ହେଲେ ଠେଙ୍ଗାଜାନି ସନ୍ତୋଷ୍-କୁମାରୀ ଫେରି ଆସିବେ । ସାହେବଙ୍କୁ କହି ଠେଙ୍ଗାଜାନିକୁ ସମ୍ପ୍ରଦାୟ ଭିତରେ ଗ୍ରହଣ କରିନେଇ ହେବ ଏବଂ ତା'ର ବାପା ନାଇକ ଥିଲା ବୋଲି ସେ ମଧ୍ୟ ନାଇକ ହେଲେ ହୋଇପାରିବ ଏବଂ ଗାଁରେ ରହିବ ଜଣେ ଖ୍ରୀଷ୍ଟାନ ନାଇକ । ରବିବାର ଦିନ ମଣ୍ଡଳୀ ପ୍ରାର୍ଥନାରେ ସଲମନ୍ ପାଷ୍ଟର୍ ଉପସ୍ଥିତ ଥାଇ ଏଲିଓ ପ୍ରାଚୀନ ନାଇକ ନାଁରେ ପରମ ପିତାଙ୍କୁ ଗୋଟିଏ

ପ୍ରାର୍ଥନା କରି 'ହାଲେଲୁୟା' ଗାଇଥିଲେ । ଯେ ଜଗତକୁ ତ୍ରାଣ କରିବା ନିମନ୍ତେ ଜଗତର ସବୁ ପାପ ସବୁ ଦୁଃଖ ଆପଣା ଉପରକୁ ଟାଣିନେଇ ଛକ କାଠରେ ଖଣ୍ଟି ପିଟି ହୋଇଥିଲେ, ତାଙ୍କୁ ଅନୁରୋଧ କରିଥିଲେ, ଗାଁ ନାଇକର ଆତ୍ମା ଉପରୁ ଦୁଃଖର ବାଉଳତା ଉଠିଯାଇ ତା'ର ଆତ୍ମା ପରିଷ୍କାର ହେଉ ଏବଂ ସନ୍ତୋଷ୍ ଜୁମାସ୍ତ ଯେପରି ସୁଖରେ ଥାଉ । ସମସ୍ତେ ସମସ୍ୱରରେ 'ଆମେନ୍' ପଦ ଉଚ୍ଚାରଣ କରିଥିଲେ ଏବଂ ପୁଣି ପୁଣି 'ହାଲେଲୁଆ' ଗାଇ ପ୍ରାର୍ଥନା ଶେଷ କରିଥିଲେ ।

ଏଇଥିଓ ପ୍ରାଚୀନ ଶାନ୍ତି ପାଇଲେ ଏହିପରି ଭାବି ଯେ, ସେ ପ୍ରକୃତ ପଡ଼ିଶାର କର୍ତ୍ତବ୍ୟ କରିଛନ୍ତି । ବନ୍ଧୁର କାର୍ଯ୍ୟ ଦେଖେଇଛନ୍ତି । କିନ୍ତୁ ନାଇକର ପ୍ରାଣରେ ତଥାପି ଶାନ୍ତି ଆସିନି ନାହିଁ । ନାଇକାଣୀ ବୁଝିନି ନାହିଁ । ଗାଁ ଲୋକେ ଢଣ୍ଟାରକୁ ଧରିଲେ । ଢଣ୍ଟାର ପାଞ୍ଜି ଓଲଟେଇଲା । ଗୋଟାକ ପରେ ଗୋଟାଏ ନାକପୁଡ଼ା ବୁଜି ଆରଟାରେ ସାଁ ସାଁ ନିଶ୍ୱାସ ମାରିଲା । ମଦ ପିଇଲା । ମୁଣ୍ଡ ଆଉଡ଼ ହେଲା । ଆକାଶକୁ ଅନେଇଲା । ତଳେ ଗାର କାଟି ଭୁଟୁରୁ ଭୁଟୁରୁ ହେଲା । ଶେଷରେ ନିଷ୍ପତ୍ତି ଦେଲା ଯେ ବାଦବୁଢ଼ା ପାଖେ ବିଶିଷ୍ଟ ପୂଜାର ଆୟୋଜନ ହେବ । ଗୁରୁମାଇ ନାଚିବ । ଧାଂଡ଼ୀ ନାଚ ହେବ । ଉତ୍ସବରେ ନାଇକ ନାଇକାଣୀ ଯୋଗ ଦେବେ । ତେବେ ଯାଇ ବାଦବୁଢ଼ାର ଦୟାରେ ସେମାନଙ୍କର ପ୍ରାଣ ଶୀତଳ ହେବ । ଯେଉଁ ଦୁଷ୍ଟ ଭୂମା ତାଙ୍କ ଘରେ ବସାକରି ସବୁଦିନେ ତାଙ୍କୁ କନ୍ଦେଇ ଲାଗିଛି, ସେ ପଳେଇଯିବ କୁଆଡ଼େ ।

ସମସ୍ତେ ପ୍ରସ୍ତୁତ ହେଲେ, ପୂର୍ଣ୍ଣିମା ରାତିର ବିଶିଷ୍ଟ ପୂଜା ପାଇଁ ।

—୧୩—

ଏତେବଡ଼ ପୃଥିବୀଟା ଆଲୁଅରେ ଅନ୍ଧାରରେ ପ୍ରସାରିତ ସଙ୍କୁଚିତ ହେଉଥାଏ । କେତେବେଳେ ଅନ୍ଧାର ରାତିରେ କେଉଁଠେ ଯାନଟିଏ ହୋଇ-ଯାଇ ଅନ୍ଧାରର କଳା କମଳ ଯୋଡ଼ିପୁଡ଼ି ହୋଇ କେଉଁ କଣରେ ଶୋଇପଡ଼େ । ଖାଲି ମନଗହ୍ୱରର ସ୍ମୃତି ପରି ଅଧପୋଡ଼ା ଜହ୍ନରେ ଧଇର୍ଯ୍ୟ

ଝଲୁଥାଏ ଝକ ଝକ । କଏ କେତେବେଳେ ମୂଠା ମୂଠା ଖଇ ପରି ତାରା-ଗୁଡ଼ାକୁ ନେଇ ଆକାଶ ଉପରକୁ ବିଞ୍ଚାଡ଼ି ଫୋପାଡ଼ି ଦିଏ । କେଉଁଠି ଲୁଚିଯାଏ କେଉଁଠି ଆଜି ଗଡ଼ପଡ଼ି ଅଦୃଶ୍ୟ ହୁଏ କେଉଁ କଣରେ । ତାହାର ଭିତରେ ଆଶା ନିରାଶାର ସ୍ପନ୍ଦନ ଅନୁଭୂତିରେ ଜୁଳୁଜୁଳୁଆ ପରି ଟିକମିକ ହେଉଥାନ୍ତି କେତେ ପ୍ରାଣୀ, ଗୋଟିକରୁ ଆଉଟି ବାରିହୁଏ ନାହିଁ ।

ସମନାଇକ ମନର ଭାବକୁ କଥାରେ ଗୋଟି ଗୋଟି କରି ବଛେଇ ଶିଖି ନାହିଁ । କଏ ଶିଖିଚି ବା ? ଖାଲି ଘୁଙ୍ଗାହୋଇ ସେ ବସି ରହିଚି ଯୋଉଠି ସେଇଠି । ବୁଲୁଚି ତ ବୁଲୁଚି, କୁଆଡ଼େ ବୁଲୁଚି ଜାଣେ ନାହିଁ । ତା'ର ଜୀବନ ବଞ୍ଚିବା କଥାର ନୁହେଁ, କାବ୍ୟ ବର୍ଣ୍ଣନାର ନୁହେଁ, ଖାଲି ଖାଲି ଗୁଡ଼ାଏ ଅନୁଭୂତିର, ଧୂଳି ପରି ଯେ ଦେହ ଉପରେ ପଡ଼େ, ଗୋଟି ଗୋଟି କରି ଉଠେଇ ନେଇ ଦେଖି ହୁଏ ନାହିଁ ତ । ଦେହ ଭିତରେ ପ୍ରାଣର କେନ୍ଦ୍ର କୌଣସି ଗୋଟିଏ ଅଙ୍ଗପ୍ରତ୍ୟଙ୍ଗରେ ନାହିଁ । ଛାତି ଭିତରଟା ବୁଢ଼ିଗଲା ବୁଢ଼ିଗଲା ପରି । ମନର ବଇଁଶୀର ମହାଶୂନ୍ୟରେ ନିଃଶବ୍ଦ ପବନ । କ'ଣ ଗୁଡ଼ାଏ ଜକଜକ ଝକଝକ ହୋଇ ଝଟେ । ତାପରେ ଅନ୍ଧାର ଆସେ ଲୁହାଇ ଲୁହାଇ । ସବୁ ସେ ଭୁଷୁଡ଼େଇ ଦେଇ ଗଡ଼େଇ ଦେଇ ଓଲଟେଇ ଦେଇ କେଉଁଆଡ଼େ ନେଇ ଚାଲିଯାଏ । ବସନ୍ତ ଆରମ୍ଭ ହେଲାଣି । ହଠାତ୍ କେତେ ଗୁଡ଼ାଏ ଝନ ନିଦରେ କଟିଥିଲା ଯେପରି । ଅନେକ କାମ ବାକି । ଏହିପରି ଚେତନା ଯେପରି ଆସିଛି ପୃଥିବୀକୁ । ଚାରିଆଡ଼େ ମହା କଳରବ । କେତେ ଅଚିହ୍ନା ଚଢ଼େଇଙ୍କର କିଚିରି ମିଚିରି । କେତେ ରଙ୍ଗର ଗୁଣ୍ଡାପରି କେତେଠୁଣୁ ଠୁଣୁ ଗୁଣୁ ଗୁଣୁ ଖଣ୍ଡ ଖଣ୍ଡ ସ୍ୱରର ଭଗ୍ନାଂଶ ପରି କୁସୁମ ଗଛର ଲଖ ପରି ଲଖି ରହିଛନ୍ତି ସେମାନେ ବଣର ଲଟାରେ ଡାଳରେ । ଅଦିନିଆଁ ଫୁଲର ସୋରିଷ । ଆମ୍ବ ତୋଟାରେ ବଉଳର ସ୍ୱର୍ଗ । ମହୁମାଛି ଆଜି ଭଅଁର । ଗଛ ଡାଳରେ ଗଛ କୋରଡ଼ରେ ପଥର ଖୋଲରେ, ଯେଉଁଠି ଦେଖିଲେ ମହୁଫେଣା ।

ବସନ୍ତ ଆସିଛି । ଆଜି ଦୁଇମାସ ଗଲେ ଲାଗିଯିବ ଚଇତ୍ର ମଉଛବ । ବସନ୍ତ ଆସିଛି । କହେଇବ ପୃଥିବୀ କାନ୍ଦୁ କି ସନ୍ଦେଶ . ତା'ର ଧନ ଦରିଦ୍ର ଦୁଃଖୀଙ୍କୁ, ଯାହାର ଆତ୍ମା ପୋଡ଼ୁଛି ତାକୁ ? ଗୋଡ଼-ଦଳା ଘାସ ବଡ଼ଲା ଝାଞ୍ଜି ତେଜରେ ପୋଡ଼ିଯାଉଛି । ଶୁଖିଯାଉଛି । ଅସୁମାରି ଝଡ଼ିଲା

ଫୁଲ । ଯାହାର ଜନ୍ମ ମରଣର ଖବର କେହି ରଖେ ନାହିଁ । ସତେଜ କେଇଟା କଣ୍ଟାଳିଆ ଆମ୍ବ ବଉଳ । ତାହାର ଗୋଡ଼ତଳେ କୁଡ଼ କୁଡ଼ ମଲ୍ଲିଫୁଲ । ମଲ୍ଲିକାଳିଆ ବଉଳର ଶବ ଯାହାର ସାଙ୍ଗୀଭାଇ ଆଜ ପୋକ, ମାଛି ଆଉ ପୋକ । ଯାହାକୁ ଭୁଲ୍‌ରେ କେବେ ମହୁମାଛି କି ପ୍ରଜାପତି ପଚାରି ଆସନ୍ତି ନାହିଁ । ଏଇ ଦରମଲା ଭୁଇଁ ସନ୍ଧିରୁ କେତେ କଙ୍କି କେତେ ପ୍ରଜାପତି ଡେଣାଟିମାନ ଖୋଲିଦେଇ ଉପରର ସୁବାସ ଓ ମାୟାଲୋକକୁ ଉଡ଼ି ପଳାଇ ଯାଆନ୍ତି । ସେମାନେ ତ କେବେ ତଳକୁ ଓହ୍ଲାନ୍ତି ନାହିଁ । ଦରହିପୋଡ଼ା ଘାସ ଖଣ୍ଡରେ ଅଧିକ ଅଧିକ ଚାହିଁ ଚାହିଁ ମଲ୍ଲିଫୁଲକୁ ଛାତିରେ ଜାକିଧରି ବହ୍ଳଳ ହୋଇ ଉପରକୁ ଅନାଇଁଥାଏ, ଯେଉଁଠି ଟିକି ଟିକି ଚଢ଼େଇ ଉଡ଼ୁଥାନ୍ତି । କାହାର ପକ୍ଷୀଟି ହଣେ ଜଳନ୍ତା ନିଆଁର ଫୁଲିଙ୍ଗ ପରି, କିଏ ବା ଗାଢ଼ ନୀଳ, ଶରତ୍ ଆକାଶର ଫାଳେ କି ଚିରୁଡ଼ାଏ ପରି । ଏଇ ଅନୁଭୂତି ଭିତରେ ରାମ ନାଇକ ନିସ୍ତବ୍ଧ ହୋଇ ମାନ୍ଦା ହୋଇ ଗିଲା ହୋଇ ଥାଏ । ବସନ୍ତର ଡାକ ତାକୁ କୁହୁଳାଏ ଖାଲି । ସେ ଯେପରି ଦରହିପୋଡ଼ା ଘାସ ।

ଗୋଟାଏ ଅବସ୍ଥାର ମଡ଼ା ବାଟରେ ଏତେଦିନ ସେ ମାଡ଼ି ଆସି ଆସି ହଠାତ୍ କେଉଁ ଖୋଲା ଜଙ୍ଗଲ ଭିତରକୁ ଖସଡ଼ି ପଡ଼ୁଛି, ଯେଉଁ ଭୁଇଁ ସେ ଚିହ୍ନେ ନାହିଁ । ଯୋଉଁଠୁ ନିସ୍ତାର ନାହିଁ ପରା, ଖାଲି ବସି ବସି ହିନଗଣା ।

ନାଇକ ଭାଇ, ନାଇକ ଭାଇ, ହରିଜାନ କାନ୍ଧରେ ହାତ ପକେଇ ଡାକେ ।

ନାଇକ, ନାଇକ, ଗାଁ ଲୋକେ ଡାକନ୍ତି । କ'ଣ ସବୁ କହନ୍ତି । କ'ଣ ଖୁହାନ୍ତି ଏମାନେ ? କିଏ ଏମାନେ ? କାହିଁକି ହରକତ କରିବାକୁ ଆସନ୍ତି । ଓଃ କି ଜଞ୍ଜାଳ ! ପେଜ ଖାଇଲୁଣି ? ସେଠିଟାରେ କାଇଁକି ବସି ରହିଚୁ, ହିନ ଗୋଟାକର ଖରା ଗଲାଣି ତୋ ଉପରେ, ଆହୁର ମନ ନାହିଁ ? ଯା ବାବୁ ଘରକୁ ।

କିଏ ଏମାନେ, କାହିଁକି ଗୋଳମାଳ କରୁଛନ୍ତି ଭଲା । ମୁଣ୍ଡର ବାଳଗୁଡ଼ାକ ମୋଡ଼ା ତାର ପରି ଲହ ଲହ ହୁଏ । ଦାନ୍ତ ରଗଡ଼, ଆଖି

ଚଉତି, ଚଉତି ଫେଠକୁ କାମୁଡ଼ି କାମୁଡ଼ି କେତେବେଳେ ହେଲେ ସକେଇ ହୋଇ ଟିକଏ ରହି ରାମ ନାଇକ ଅଧଚୋଳା ଘରକୁ ଅନେଇଁ ରହୁଥାଏ । ହଁ, ତା'ର ଗୋଟିଏ ପୁଅ ଥିଲା, ଥିଲା କେବେ ବ—ଅଳ୍ପ ଅଳ୍ପ ମନେ-ପଡ଼ୁଛି···ନାଇଁ ପରିଷ୍କାର ମନେପଡ଼ୁଛି ତ—ଡାକୁଥିଲା, ବାପା ବାପା— ତା'ର ଗୋଟିଏ ପୁଅ ଥିଲା କେବେ, ଦାଦବୁଢ଼ାକୁ ମାନସିକ କରୁଥିଲା କେତେ ସେ । ପୁଅଟି ଶାଳଗଛ ପରି ବଢ଼ି ଉଠୁଥିଲା । ଭଲ ପିଲାଟିଏ । ତାପରେ—

ଆଜ ନାହିଁ, ବାଦ ହୋଇଗଲା । ରାମ ନାଇକ ଚଉତି ଚଉତି ଅନେଇଁ ରହେ ସେଇ ଅଧାଚୋଳା ଘରକୁ । ସେ ଗଲା, ଗଲାକ, ମରିଗଲା ନାଇଁ ଯେ, ଗଲା ମରିଲା ସମାନ ପରା ! ସେଇ ଘରେ ଯେପରି ତା'ର ଶବ କେଉଁଠି ଲୁଚେଇ ରଖାହୋଇଚ, ତା'ର ପୁଅ,—ତା'ର ରକ୍ତର ରକ୍ତ, ମାଂସର ମାଂସ, ତା'ର ମନର ମନ, କଥାର କଥା । ତା'ର ପୁଅ । ତା'ର ପୁଅ । ହାୟ ହାୟ ହାୟ ହାୟ !

ରାମ ନାଇକର ବଡ଼ ବଡ଼ ନାଲ ନାଲ ମଇଁଷିଆ ଆଖିଗୁଡ଼ାକ ଆହୁରି ଟାଣି ହୋଇ ବଡ଼ ହୋଇଯାଏ । ମନର କେଉଁ ଅଲକ୍ଷିତ କଣରୁ ଦେହର କେଉଁଠୁ ଧୀରେ ଧୀରେ ଉଠି ଉଠିକା ଆଖିବାଟେ ଜନ୍ମହୁଏ ବଡ଼ ବଡ଼ ଲୁହ, ଆଖି ଫାଟିପଡ଼େ । ଝରିପଡ଼େ ଟପ୍‌ଟପ୍ ବଡ଼ ବଡ଼ ଲୁହ । ଆଁ'ଟା ବଡ଼ ହୋଇଯାଏ, ପାଟି ଉପରୁ ତଳକୁ ବୁଡ଼ିଅଣି ଜାଲ ପରି ସୂତାଗୁଡ଼ାକ ଖାଲି—ଆଜ ଉଷ୍ମ ଲୁହ, ଯେ ଆପେ ଝଡ଼େ—ମଲା ବଉଳ ପରି······

ପଛଆଡ଼େ ଘରର କେଉଁ ସନ୍ଧିରେ ବାଡ଼େଇ କସ୍ତୁଡ଼ି ହୋଇ ଠେଙ୍ଗାର ମା ପଡ଼ି ରହିଚ । କାହିଁଗଲା ପୁଅ ? ଖୋଜ କରୁ ନାହିଁ ? ମା ହାତରୁ ପେଜ ମଦଏ ଆସି ପିଇପିବ ନାହିଁ ? ଫୁରୁଫୁରିଆ ମୁଣ୍ଡଟା ମା'ର ବହଳ ପେଟରେ ଭୁଞ୍ଜିଦେଇ କୋଉଠାରେ ଉହାଳ ପଡ଼ି ଡାକିବ ନାଇଁ ଆଜ ମା ଲୋ ମା, ଖଜା ଖେଳଦେ ମା—

ଠେଙ୍ଗାର ମା କ୍ଲାନ୍ତ ହୋଇ ପଡ଼ି ଘୁମୁରି ଘୁମୁରି କାନ୍ଦୁଥାଏ । କେଡ଼େ ସୁନ୍ଦର ତା'ର ସ୍ୱର, ଘରି ଭଲ ରାଗିଣୀଟିଏ ତ—ଏକା ପରି

ଗୋଟାଏ ସ୍ୱରରେ, କିନ୍ତୁ ପ୍ରାକୃତିକ ସଙ୍ଗୀତ ଯେତେ ସବୁ ଗୋଟାଏ ସ୍ୱରରେ ନୁହେଁ କି ? ଠେଙ୍ଗାର ମା'ର କାନ୍ଦଣା ପବନକୁ ଶିରିଶିରିକା କେତେ ଦୂରକୁ ବୋହି ଚାଲିଯାଏ । ବର୍ଷର ବସନ୍ତ ସହିତ ତା'ର ଛନ୍ଦ କେଉଁଠି ହେଲେ ବି ଯୋଡ଼ ଲାଗେ ନାହିଁ । ମିଶିଯାଏ—ଫୁଲ, ସୁବାସ, ଉଜ୍ଜ୍ୱଳ ଆଲୁଅ—ବସନ୍ତ, ଠେଙ୍ଗାର ମା'ର ବିକଳ କାନ୍ଦଣା ।

—୧୪—

ପୂର୍ଣ୍ଣିମା ଆସିଲା, ସୁମ ନାଇକ ଟିକିଏ ପେଜ୍ ପାଣି ପିଇଲାଣି । ଜମିର ହାଲଚାଲ୍ ବୁଝୁ ନାହିଁ ସିନା, ପେଜ୍ ପାଣି ପିଇଲାଣି । ହଉ, ଏଥିପରି ସବୁ ସୁଧୁରିଯିବ । ଠେଙ୍ଗାର ମା'ର କାନ୍ଦଣା ବନ୍ଦ ହୋଇ ନାହିଁ ସିନା, ସେ ଉଠି ପେଜ୍ ରାନ୍ଧିଲାଣି । ଏବେ ଆହୁରି ବଡ଼ ପାଟିରେ କାନ୍ଦେ, ଖିଆପିଆ କରି ଦେହରେ ଜୋର୍ ଆସିଛି ବୋଧହୁଏ । କ୍ରମେ ସବୁ ସୁଧୁରିଯିବ । ସବୁ ଦାଦିବୁଢ଼ାର ଦୟା ତ ।

କିନ୍ତୁ ଦଶାର ଯେଉଁ ବିଧାନ ଧରି ଦେଇଛି, ତହିଁରେ ଟିକେ ବି ଏପାଖ ସେପାଖ ହେବାର ଉପାୟ ନାହିଁ । ଦାଦିବୁଢ଼ାକୁ ମାନସିକ କରି ହୋଇଥିଲା· ଓମ୍ ଟୋକାକୁ ନେଇ ପରଜାଟୋକାର ଆସାମ୍ ପଳେଇଯିବା, ଏ ଗୋଟାଏ ଅମଙ୍ଗଳ, ଗାଁର ଆଦମ ଗଛରୁ ବାହାରେ, ଆଉ ନାଇକର ଏ ଦୁଃଖ, ଲୋକେ ଭାବିଥିଲେ ସେ ବାପ୍ସା ହୋଇଯିବ । ଏବେ ବି ତ କିଛିହେଉ ନାହିଁ କଣ ହେବ । ତେଣେ ଦାଦିବୁଢ଼ା ପାଖେ ପୂଜା ହେବା ସୁନିଶ୍ଚିତ । ଉଚିତ ନ ହେଲେ ବି ଆନନ୍ଦ ଡାକ ଦେବା ପାଇଁ ଗାଁ ଲୋକେ ଆଜି ପୂଜା କରିବେ ଚିରନ୍ତନ ପୂର୍ବପୁରୁଷଙ୍କ ଅନାଦି ଆତ୍ମାକୁ, ତା'ର ପ୍ରକାଶମାନ ରୂପକୁ, ଯେ ଟାଙ୍ଗର ମୁଣ୍ଡିଆ ଉପରେ ହୋଇ ବସିଛି ସାତବେଣ୍ଟିଆ ଖଣ୍ଡିଆ ଖଜୁରିଗୁଣ୍ଡା ।

ଘରି ଲିପା ହେଲା । ପରଜା ସୁନ୍ଦରୀମାନେ ଗାଁ ତଳ ମୁଗନ୍ ନଈରେ ବୁଡ଼ ବୁଡ଼ ଗାଧୋଇ ପଶିଲେ । ପୂର୍ବପରି ସାରିଆଫୁଲ ଡାକିଲା, ଏ ସାରିଆବାନ୍ ।

ସାଣ୍ଆଦାନ୍ ଗଳା ଥରେଇ ଥରେଇ କହିଲା, ଉଁ—

ଠେଙ୍ଗାଜାନ ଯାଇଛୁ, ଯାଉ, ଆଉ କେତେ ଜାନ ମାଂଗଣି କରିବାକୁ ଆସିବେ ତାକୁ । ସେ ଠେଙ୍ଗାଜାନକୁ ଘୃଣା କଲାଣି । ଏଇ ଘୃଣା ତଳେ ପାଉଁଶ ହୋଇ ଜଳିଗଲା କେଇଟା ବର୍ଷର ସବୁ ସ୍ନେହ । ସେ ଚିରନ୍ତନୀ ଧାଂଡ଼ୀ, ଯାହାର ଗୋଡ଼ତଳେ ଗୋଟାଏ ଚୁମ୍ବକ, ଯାହାର ଟାଣ ଧାଂଡ଼ାର ଓସାର ଛାତି ଉପରେ । ସାଣ୍ଆଫୁଲ୍ ସାଣ୍ଆଦାନ୍ ପୁଣି ସଖୀ ସଖୀ । ଗୋଟାଏ ଦୁଃସ୍ୱପ୍ନ ପରି କେବେ ମନ୍ଥିରେ ଠେଙ୍ଗାଜାନ ଉଇଁଥିଲା । ପୁଣି ସେ ଭାସି ଚାଲିଯାଇଚ ଏଇ ମୁଗନ୍ ନଈର ଛଳ ଛଳ ପାଣିରେ ।

ଗୋଟାଏ ବଡ଼ ଜହ୍ନ ଗୋଲ୍ ହୋଇ ଗଛରେ ଉଇଁଲା । ପାହାଡ଼ର ଅଗ ଛୁଇଁ ଛୁଇଁକା ଖେଳିଗଲା ଗୋଟାଏ ତେଜତେଜକା ଆନନ୍ଦର ଢେଉ । ଦାଢବୁଢ଼ାକୁ ଖେଞ୍ଜ କରି ଗାଁର ସବୁ ଧାଂଡ଼ୀମାନେ ହାତରେ ହାତ ଗୁନ୍ଥି ଠିଆହେଲେ; ଧାଂଡାମାନେ ତେଜ ଉଠି ଏପାଖେ ସେପାଖେ ଦେହ ଘଷାଘଷି କରି ବୁଲି ଲାଗିଲେ । ପ୍ରଚୁର ରନ୍ଧା ମଦ ପିଆ ହେଲା । ଦିଶାରି ମନ୍ତ୍ର ପଢ଼ିଲା । ଗୁରୁମାଙ୍କ ନାଚିଲା, କାଳିସି ଲାଗି ସେ କହିଲା—ଠେଙ୍ଗାଜାନ ଖସ୍ପ୍ ଭୁମା ଥିଲା । ସଲୋଷ୍କୁମ୍ ଖ ଖସ୍ପ୍ ଭୁମା ଥିଲା । ସେ ଦୁହେଁ ଏକାଠି ହୋଇ ଏହିପରି ଲୁଚି ପଳେଇ ମିବେ ଏକଥା ଆଗରୁ ଲେଖାଥିଲା, ସେମାନେ ଜନ୍ମ ହେବା ଆଗରୁ । ତୁମେ ସମସ୍ତେ ଜନ୍ମ ହେବା ଆଗରୁ ମୁଁ ଦାଢବୁଢ଼ା, ମୁଁ ସବୁ ଜାଣେ, ତୁମ ସମସ୍ତିଙ୍କୁ ସଜିଛୁ ମୁଁ, ତୁମ ସମସ୍ତିଙ୍କର ଭଲମନ୍ଦ ସବୁ ମୋ ହାତରେ । କେହି ମନଦୁଃଖ କର ନାହିଁ ପିଲାମାନେ । ନାଚ କର, ଗୀତ ବୋଲ, ମଦ ପିଅ, ମତେ ମଦ ଦିଅ, କୁକୁଡ଼ା ଦିଅ । ମୁଁ ଅଭୟ ଦେଉଚି, ତୁମର କିଛି ଅନିଷ୍ଟ ହେବ ନାହିଁ ।

ଆନନ୍ଦର ଲହଡ଼ି ଖେଳିଗଲା । ମଦ ପିଆ ହେଲା, ଗୁରୁମାଙ୍କ ଥମ୍ବିଲା । ଅନ୍ତରଙ୍ଗ କଳରବ ଭିତରେ ନାଚ ଆରମ୍ଭ ହେଲା । ଏଲ୍ଓ ପ୍ରାଚୀନ୍ ସଲମନ ଗୁରୁ ଏ'ସବୁଥିରେ ବିଶ୍ୱାସ କରନ୍ତି ନାହିଁ । ଦୁହେଁ ତୁନି ତୁନି କରିପଟିଆ ହୋଇ ବସି କଥାଭାଷା ହେଉଥିଲେ—ଏହିପରି ଏ ଲୋକମାନେ ସଇତାନକୁ ପୂଜା କରନ୍ତି । ଖାଲି ଅଧୋଗତି ହେବ ଏମାନଙ୍କର, ଏମାନେ ସମସ୍ତେ ନରକରେ ପଡ଼ିବେ । କେବେ କୌଣସି

ଦେବଦୂତଙ୍କର ମୁହ ଷ୍ଟହିଁବେ ନାହିଁ । ସେମାନେ ଏଥିରେ ବିଶ୍ବାସ କରନ୍ତି ନାହିଁ, କିନ୍ତୁ ରଙ୍ଗା ମଦକୁ ଅବିଶ୍ବାସ କରନ୍ତି ନାହିଁ । ସେମାନେ ପ୍ରଚୁର ପିଇଲେ, ପିଇ ପିଇ ନିଶା ଧରିଲା । ଏଣିକି ପ୍ରାଚୀନ ଦାଦିବୁଢ଼ା ଆଗରେ ଯାଇ ମାଙ୍କଡ଼ଚାଲ୍ ମାରିଲେ, ସାଧନ ଭାଙ୍ଗିଲେ, ନାଚରେ ବେଙ୍ଗଳା ପଡ଼ୁଥିବା ଧାଂଡ଼ୀମାନେ ହସି ହସିକା ପ୍ରଚୁର ଉତ୍ସାହ ଦେଲେ । ସଲମନ-ଗୁରୁ ମଦ ପିଇ ପିଇ ବାଉଳା ହୋଇ ନାଟ କରିବାକୁ ଆରମ୍ଭ କଲେ । ଧାଂଡ଼ୀ ଦଳ ଭିତରେ ପଶି ଯାଆନ୍ତି, ତାଳ ମାରି ମାରି ମୁଣ୍ଡ ହଲେଇ ହଲେଇ ନାଚନ୍ତି ।

ଦାଦିବୁଢ଼ା ଆଗରେ ବଡ଼ ନିଆଁ ଜଳୁଥାଏ । ପାରା କୁକୁଡ଼ା ବଳି ପଡ଼ଥାନ୍ତି । ଫୁଲ ଗଦା ହୋଇଥାଏ । ଦାଦିବୁଢ଼ା ନାଲି ନିଆଁ ଧାସରେ ଉଜ୍ଜ୍ୱଳ ହୋଇ ଦିଶୁଥାଏ ବହୁତ ଦୂରକୁ ।

ଢୁଂଙ୍ଗୁଡ଼ୁଂଗାର ଟୁଂଟାଂ, ବେଳେବେଳେ ଡମ୍ ବାଇଦର ଗମ୍ଭୀର ଘମୁରି, ଧାଂଡ଼ୀଙ୍କ ଚିତ୍କାର, ଧାଂଡ଼ୀଙ୍କ ହର୍ଷରୋଳ—ଓହୋ ହୋ ଶସ୍—ଧାଂଡ଼ୀ ଧାଂଡ଼ା ମିସି ଡମ୍ ବାଇଦର ଅବିରତ ଝଙ୍କାର—ଧାଡ଼ୀ—ଧାଂଡ଼ା, ଧାଂଡ଼ୀ—ଧାଂଡ଼ା—ଧାଂଡ଼ୀ—ଧାଂଡ଼ା, ଖୁସିଣ କଳରବ ।

ଗାଁ ନାଇକ ଓ ତା'ର ସ୍ତ୍ରୀଙ୍କୁ ସେଠିକି ନିଆ ହୋଇଥିଲା । ଭୂଇଁଚାନ ହୋଇ ସେମାନେ ବସିଥିଲେ । ନାଚ ମଝିରେ, ବାଜଣୀ ମଝିରେ ସୁଲୁସୁଲିଆ ପବନ ଟିକିଏ କୁଆଡ଼ୁ ଆସି ରାମ ନାଇକକୁ ବାଞ୍ଛି ବାଞ୍ଛିକା ଚାଲିଗଲା । ହଠାତ୍ ତା'ର ଚେତନା ହେଲା ଆରେ ସତେ ତ !

ଯେପରି ଅମଡ଼ା ମାଡ଼ ଅବାଟରେ ଗଡ଼ ଚାଲିଲା ବେଳେ କେଉଁଠି କେଉଁ ମଲାପଚର ତଳର ଝୁଣ୍ଟାରେ ଗୋଡ଼ ଝୁଣ୍ଟି ହୋଇ ମନଟା ଆପଣା ଆପେ କହି ଲଗିଲା ଆରେ ସତେ ତ ! ମନେ ପଡ଼ିଲା, ସମସ୍ତ ଥିଲା ଯେତେବେଳେ ସେ ବି ଧାଂଡ଼ା ଥିଲା । ଏହିପରି କେତେ ନାଚର ମଜ୍‌ଲିସରେ କେତେ ସେ ନାଚିଛି, କେତେ ସେ ଡୁଂଗୁଡୁଂଗା ବଜେଇଛି । କେତେ ଲୁଚି ଲୁଚି ଯୌବନର ଛଇ ଫୁଟେଇ ଦେଇ କେତେ କସରତ୍ କରି ସେ ବି ତାର ଧାଂଡ଼ୀକୁ ଜିତି ନେଇ ପାରିଛି, ସେଇ ଠେଙ୍ଗାର ମା'କୁ । ଆଜି

ଆଜ ଏ ଦୁଦ୍ଦିନରେ—ଠେଙ୍ଗାର ମା ଅଛି । କେତେ କଏ ଗଲେଣି, କେତେ କଏ ଯିବେ, ସେ ଅଛି ତାର ଧାଂଡ଼ୀ ଅଛି, ଆଜର ଏ ଜହ୍ନରାତି ଅଛି, ପିତୃପୁରୁଷଙ୍କ ପ୍ରତୀକ ଏ ଦାଦବୁଢ଼ା ଏବ ଅଛି । ଠେଙ୍ଗାଜାନ୍ଧ ପର ଧାଂଡ଼ା—ସେ ବ ଡୁଂଗ୍‌ଡୁଂଗା ବଜୋଉଥିଲା, ଧାଂଡ଼ୀ ନଚ୍ଚେଉଥିଲା, ଆଜ ତା'ର ମନହେଲା, ତା'ର ମନଲଖି ଧାଂଡ଼ୀ ବାଛି ନେଇ କେଉଁ ନୂଆ ବାଟରେ କାମ କମାଣି କରିବାକୁ ଚାଲିଯିବାକୁ—ସେ ପୁରୁଷ ପିଲା, ତା'ର ମନଇଚ୍ଛାରେ ଚାଲିଗଲା, ତା'ର କପାଳ ।

ସେଇଠି ଧୂଳିଭଡ଼ା ଗୋଷ୍ଠୀର ଆନନ୍ଦ ନାଚ ଆଡ଼କୁ ମୁହଁ କରି ରାମ ନାଇକର ମନ ଆପଣା ଆପେ ସଜଗ ହୋଇ ଠିଆ ହେଲା, ନାଚର ନିଶା ତା'ର ମନକୁ ଚହଟେଇ ଦେଲା । ବହୁତ ଦିନ ଜର ରୋଗରେ ପଡ଼ିଲା ପରେ ଶୁଖିଲା ମୁହଁରେ ଦିନର ଉପକରଣ ଗୋଟେଇ ନେବାକୁ ପ୍ରସ୍ତୁତ ହେଲା ପରି ସେ ବ ପ୍ରସ୍ତୁତ ହେଲା ।

କେତେବେଳକେ ଦାଦବୁଢ଼ାର ତୁଷ୍ଟିବିଧାନ ଶେଷ କରି ସାରି ଗାଁର ଲୋକେ ମେଳ ହୋଇ ଗାଁ ଦାଣ୍ଡକୁ ଗଡ଼ିଗଲେ । ପରଜା ନାଚ ଥରେ ଆରମ୍ଭ ହେଲେ ଆଉ ସରିବାକୁ ମନକରେ ନାହିଁ । ରାତିଯାକ ଲାଗିଥାଏ । ସେମାନେ ଆଜ ମନଇଚ୍ଛା ନାଚିବେ ।

କିନ୍ତୁ ଉପରର ଏ ଜହ୍ନଧୂଆ ମୁଣ୍ଡିଆ ଉପରୁ ଉଠିଯିବାକୁ ରାମ ନାଇକର ମୋଟେ ମନ ହେଲା ନାହିଁ । ଆଜ ମନଭିତରର ଅନ୍ଧାର ଭିତରେ ଛପି ଛପିକା କେଉଁଠି କେଉଁଠି ଆଲୁଅର ସୂଅ ଜଂକ ମାରୁଛି । ଆଜ ସେ ଭାବିପାରୁଚ । ରାଗିପାରୁଚ । ଆପଣା ଉପରେ ଆଉ ପୁଅ ଠେଙ୍ଗାଜାନ୍ଧ ଉପରେ, ଆଉ ସେ ମାଯ୍ନାବିନୀ ସନ୍ତୋଷକୁମାରୀ ଉପରେ, ଯେ ଆଉ ଆଉ ସେ ଡମ୍ ଧାଂଡ଼ୀମାନଙ୍କ ପରି କମିଆଁ ଜାଣେ । ବଶୀକରଣ କରିପାରେ । ପ୍ରସନ୍ନ ଜହ୍ନ ଆଲୁଅ ଭିତରେ ଆପଣାର ଚିନ୍ତାଧାରାକୁ ମିଶେଇ ଦେଇ ସେ ବ ସମସ୍ତଙ୍କୁ କ୍ଷମା କରିଦେଇ କହିପାରୁଚ । ସବୁ ଭାଗ୍ୟ, କପାଳରେ ଯାହା ଲେଖାଥିବ ତାହା କେବେହେଲେ ଖଣ୍ଡନ କରିହେବ ନାହିଁ ।

ସମସ୍ତେ ଚାଲିଗଲେ । କିଛି କ୍ଷଣ ଦାଦବୁଢ଼ା ପାଖେ ଭୁନଭାନ୍ଦ ପଡ଼ିଗଲା । ଗାଁ ଦାଣ୍ଡରୁ ନାଚ ଆଉ ବାଇଦର ଶବ୍ଦ ଶୁଭିବାକୁ ଲାଗିଲା,

ଗୋଟିଏ ଗାଁର ଗୋଠାଏ ଗୋଷ୍ଠୀର ଆନନ୍ଦ ପର୍ବତକୁ ପର୍ବତ କରି ପ୍ରତିଧ୍ୱନି କରି କରିକା । ପାହାଡ଼ ଦେଶର ଆଉ କେତେ ମିଞ୍ଜିମିଞ୍ଜି ଗାଁ ଗୋଷ୍ଠୀଙ୍କ କାନକୁ ଛୁଇଁ ଚାଲିଲା । କିଛି ସମୟ ଗଲା, ଅଳ୍ପ ଟିକିଏ ମାନ୍ଦା ପଡ଼ିଗଲା । ତା'ପରେ ରାମ ନାଇକ ଚାରିଆଡ଼କୁ ଅନେଇଁଲା, ଯେପରିକି ଆଖପାଖରେ ମୁଣ୍ଡା କେହି କେଉଁଠି ନ ଥିବେ । ଚୋର ପରି ତରଂ ତରଂ ହୋଇ ଚାଲିଗଲା ଦାଦିବୁଢ଼ା ଆଡ଼କୁ ।

ମନର ସବୁଯାକ ଚିନ୍ତା ଧାରଣା ଥମ୍ଭେଇ ଦେଇ ଦେବତା ଆଡ଼କୁ ସଳଖେ ଅନେଇଁ ସେ ଠିଆ ହେଲା । ଏଇ ତା'ର ମୁହୂର୍ତ୍ତ, ଯେତେବେଳେ ସେ ଆଉ ତା'ର ଅଦ୍ଭୁତ ଦେବତା ମୁହାମୁହିଁ—ମଝିରେ ହିଡ଼ ନା, ବାଡ଼ ନାହିଁ, ଭକ୍ତ ଆଉ ତା'ର ଭଗବାନ । କାନ୍ଦଣାରେ ତା'ର ହୃଦୟ ଫାଟିଯାଉଥାଏ । ଦାଦିବୁଢ଼ା ଗୋଡ଼ତଳେ ଭୂଇଁରେ ବସି ପଡ଼ି ତା'ର ଗୋଡ଼ ଉପରେ ଢଳି ପଡ଼ି କାନ୍ଦଣାରେ ଛାତିର ଘୁଞ୍ଜଳ ହୋଇ ଫାଟିଯାଇ ଭଙ୍ଗା ଭଙ୍ଗା ସ୍ୱରରେ କହିଲା—

ଦାଦିବୁଢ଼ା, ତୋର ମନରେ ଏଇଆ ଥିଲା ଦାଦିବୁଢ଼ା—କି ଦୋଷ କରିଥିଲି ମୁଁ ତୋର, ମୋର ସର୍ବନାଶ କଲୁ । ଯଦି କହୁଚୁ ଠେଙ୍ଗାଟି ମୋର ଖରାପ ଜୁମା, ଗୋଟିଏ ଭଲ ଜୁମା ପଠେଇଲୁ ନାହିଁ କାହିଁକି ଦାଦିବୁଢ଼ା ? ପାଳିଲି, ବଢ଼େଇଲି, ଏଡ଼େଟିରୁ ଏଡ଼ୁଟିଏ କଲି—ଶେଷରେ ମୋର ପୁଅକୁ ମୋର ମୁହଁରେ ଗୋଇଠା ମରେଇ ନେଇ ଦୂରଦେଶକୁ ବିଦାକରିଦେଲୁରେ, ଦାଦିବୁଢ଼ା—ମୋର ଖାଇବା ଭାତରେ ଧୂଳିଦେଲୁ—

ହେଁ କନା କାନ୍ଦି ପକେଇ ରାମ ନାଇକ ଦାଦିବୁଢ଼ା ଗୋଡ଼ ତଳେ ପଡ଼ିଲା । ସାତବେଣ୍ଟିଆ ଖଜୁରି ଗଛର ଅଣ୍ଟା ପାଖ କୁକୁଡ଼ା ରକ୍ତରେ ରଞ୍ଜିତ ହୋଇ ରହାମଦରେ ବୁଢ଼ ଠିଆ ହୋଇ ରହିଥାଏ ସେହିପରି, ହଲ୍ ନାହିଁ ଚଲ୍ ନାହିଁ ।

ରାମ ନାଇକର ହେତୁ ହେଲା ଯେତେବେଳେ ତାରି ବୁଢ଼ୀ ଠେଙ୍ଗାର ମା ତାକୁ ଖୋଜି ଖୋଜି ଆସି ପହଞ୍ଚିଲା । କୁଣ୍ଢେଇ ପକେଇ ଉଠେଇଲା, ବୁଢ଼ା ବୁଢ଼ୀ ଢହେଁ କାନ୍ଦି କାନ୍ଦିକା ଦାଦିବୁଢ଼ାକୁ ପିଠି ବୁଲେଇ ଦେଇ ଗାଁ ବାଟ ଧରିଲେ । ବୁଢ଼ୀ ବୋଧଦେଇ କହୁଥାଏ, ଯାହା କପାଳରେ

ଲେଖା ଥିଲା ତା ହେଲା । ତୁ ଏମିତି ବାପୁଙ୍କ ପରି ହେଲେ କାହାକୁ ଯିତି ମୁଁ ଘର କରିବ କହିଲୁ ? ଆ ଘରକୁ ଯିବା—

—୧୪—

ମହା ସମାରୋହରେ ଚଇତ ଆସିଲା ଆଉ ଗଲା, ପାହାଡ଼ଦେଶକୁ ମତେଇ ଦେଇ, ନଚେଇ ଦେଇ । ଆମ୍ବର ଦିନ ଗଲା । କାକୁଡ଼ି, ଯୋନାର ଦିନ ଆସିଲା ଏବଂ ଗଲା । ଆସିଲା ଜ୍ୟେଷ୍ଠ । ଘରେ କାହାର ବସିରହିବାକୁ ତର ନାହିଁ । ଯେଉଁଠି ଦେଖିଲେ ଚଷାଚଷି ବୁଣାବୁଣି । ଧୂଆଁ ଲଥା ଆକାଶ ତଳେ ତଳେ ଖଣ୍ଡ ଖଣ୍ଡ ପାଉଁଶିଆ ମେଘ କ୍ରମେ ଜମିଲା, କ୍ରମେ କଳା ପଡ଼ିଲା । ତାପରେ ଘଡ଼ଘଡ଼ିରେ ବସୁଧା କମ୍ପେଇ ଦେଇ ପଡ଼ିଲା ଅସରା ପବନରେ ଶୀତରେ ଅଜାଡ଼ି ହୋଇପଡ଼ିଲା । ଗ୍ରାମ ନାଇକ ଗାଁ ହାଲ୍‌ଚାଲ୍ ବୁଝୁଥାଏ । କ୍ଷେତ କାମ କରୁଥାଏ । କାମିକା ଲୋକ ସ୍ଥିର ହୋଇ ବସି ରହିପାରେ ନାହିଁ । ନାଇକ ନାଇକାଣୀ ପୁଣି ପୂର୍ବ ପରି ସାଧାରଣ ମଣିଷ ହେଲେ । କେବେ ସେମାନେ ଆଉ ପ୍ରକାରେ ହୋଇଥିଲେ କାହାର ହେତୁ ନାହିଁ । କେବେ ଠେଙ୍ଗାଜାନ ଯାଇଥିଲା, କେବେ ସନ୍ତୋଷ୍‌କୁମାରୀ ଯାଇଥିଲା, ଦଲ୍‌ଦଲ ଗଜୁରୁଥିବା ଚଷାଭୂଇଁରେ ସେକଥା କେଉଁଠି ଲେଖା ନାହିଁ । ଉପରେ ଧରମ ତଳେ ବସୁମତୀ । ମଝିରେ କେଉଁଠି କଛି ନୂଆ ନାହିଁ କି ପୁରୁଣା ନାହିଁ ।

ପରଜା ଲୋକେ କହିଲେ, ଦେଖ ଦାଢ଼ିବୁଢ଼ା କେମିତି ଠାକୁର । ଡାକିଲେ ଓଁ’କରେ । ଗ୍ରାମ ନାଇକ ଯେମିତି ହେଉଥିଲା କିଏ ବିଶ୍ୱାସ କରୁଥିଲା ପୁଣି ଭଲଲୋକ ପରି କାମ କମାଣି କରିବ ବୋଲି ? ତାକୁ କିଏ ଭଲ କଲା । ସେଇ ଦାଢ଼ିବୁଢ଼ା ନା ? ଦାଢ଼ିବୁଢ଼ା କୃପାରୁ ସାତବର୍ଷ ବିଭାପରେ ସୁନ୍ଦରୁ ପରଜାର ପୁଅଟିଏ ହୋଇଛି । ମିଲ୍‌କୁଜାନର ପୋଡ଼ କାଇଲା ଥିଲା ଭଲ ହୋଇଗଲା । ଲୁକୁଜାନ ମଦରଙ୍ଗା କେସ୍‌ରେ ଶିକ୍ଷା [ ଜେଲ୍ ] ଯାଇଥିଲା, ଘରକୁ ଫେରିଲା । ଏହିପରି କେତେ ତା’ର ମହିମା । ଯାହାର ବିଶ୍ୱାସ ଅଛି ସେ ଜାଣିବ ସିନା । ଆନ ଜନ ଜାଣିବ କାହୁଁ ? ଏ ଡମ୍‌ଲୋକେ ତାକୁ ବିଶ୍ୱାସ କରନ୍ତି ନାହିଁ । ନ କରନ୍ତୁ, କି ଭଲଟା ମାଡ଼ିଯାଉଛି ତାଙ୍କର ? ପିତର, ସିମନ, ଫାଉଲ, ମିକାଲ, ହନ

ହଳ ହୋଇ ବନ୍ଧାହୋଇ ମାମୁଁ ଘରକୁ ଗଲେ, ମୁଣ୍ଡନମୁଣ୍ଡା ଗାଁର ହଜିଲା ଗୋରୁଙ୍କୁ କେଉଁ ଖୋଲପାଖେ ମାରିପକେଇ ଖାଇଯାଇଥିଲେ ବୋଲି । ବେଦଆଁ ମସ୍ତିକ ମଦ ରାନ୍ଧୁଥିଲେ । ଧରାପଡ଼ିଲେ, ଜେଲ ଗଲେ, ଜୋରିମାନା ଦେଲେ । କାହିଁକି ? ଦାନ୍ଦବୁଢ଼ା ରାଗିଗଲା ବୋଲି—

ଅନ୍ୟ ଗାଁର ଲୋକ ଷୁଆ ପାହାଡ଼ ଉପର ବାଟରେ ଛତାଛଡୋଡ଼ି ଧରି ଦୂର ଗାଁକୁ ଗଲାବେଳେ ଘାଟି ଉପରେ ଠିଆ ହୋଇ ଦାନ୍ଦବୁଢ଼ା ଆଡ଼କୁ ଅନେଇଁ ଅନେଇଁ ମୁଣ୍ଡ ନୁଆଇଁ ଦଣ୍ଡବତ କରେ । ଲୋକେ କୁହାକୋହି ହୁଅନ୍ତି, ହେଇଟି ଦାନ୍ଦବୁଢ଼ା । ଏଡ଼େବଡ ବରଷା ଓହ୍ଲେଇଲା । ଅନ୍ଧାର ଘୋଡ଼େଇଲା । ସବୁ ତା'ରି କରାମତି । ଅନ୍ଧାର ରାତିରେ ଖାଁ ଖାଁ ସାଁ ସାଁ ଯେତେବେଳେ ପାଣିମିଶା ତୋଫାନ, ଖୋଲରେ ବାଘର ଗର୍ଜନଠୁ ବଳି ପାଣିର ଗର୍ଜନ, ଦାନ୍ଦବୁଢ଼ା ନିର୍ବିକାର ଭାବରେ ଠେଙ୍ଗା ଡିପଉପରେ ଠିଆହୋଇ ବଜ୍ର ଘଡ଼ଘଡ଼ିରେ ଆପଣାର ହୁକୁମ୍ ଜାରିକରେ । ଅନ୍ଧାରକୁ କହେ, ଆହୁରି ବହଳ ହ, ମେଘମାନଙ୍କୁ କାମ ବରଗିଦିଏ ତୁ ଯା ମରିଚ-ମାଳରେ ଅଜାଡ଼୍ । ତୁ ଯା କନ୍ଧବେଡ଼ା ପଦର, ତୁ ଯା ଲରେଣ୍ ଘାଟି ଚଡ଼ିବୁ ନାରଗଛରେ ଅଜାଡ଼ିବୁ । ଦାନ୍ଦବୁଢ଼ା ସେପାଖେ ଚଳର ମଶାଣିରେ ବେଳେ ବେଳେ ମେଘ ଘୁଡ଼ିଥିଲା ବେଳେ ନିଆଁ ଗୁଡ଼ାଏ ଉଡ଼ିଉଡ଼ିକା ଏଠୁ ବୋଲି ସେଠି ସେଠୁ ବୋଲି ଏଠି ବୁଲିଥାଏ । ନିବୁଜା ଅନ୍ଧାର ରାତିରେ । ଲୋକେ କହନ୍ତି ଦାନ୍ଦବୁଢ଼ା ପିକା ଲଗେଇଛି । ପରଜା ଲୋକ ତ ଧାଂଗିଆ ନ ନଗାଇଲେ ଏତେ ବଡ ଶୀତୁଆ ଅନ୍ଧାରୁଆ ରାତିରେ ତା'ର ପିଲାଝିଲା-ମାନଙ୍କୁ ଜଗିରହି ପହରା ଦେବ କେମିତି । ଢଲୁଆଗାତ ପରି ଘରର ଜଣ୍ଡମ୍ ଭିତରୁ ମା'ମାନେ ପିଲାମାନଙ୍କୁ ଆଙ୍ଗଠି ଦେଖେଇ ଚମ୍କେଇ ଦିଅନ୍ତି । କୋଳର ପିଲାଏ ଦବେଇଁ ଭୁଣ୍ଡରେ କହନ୍ତି, ଏ ତ ଦାନ୍ଦବୁଢ଼ା-ଏ-ତ-ଦାନ୍ଦବୁଢ଼ା ।

ସବୁତ ତା'ରି ଲୀଳା, ତାକୁ ଜାଣିବ କିଏ ?

ମେଘୁଆ ଦିନର ଶେଷ ଆଡ଼କୁ ବୁଢ଼ା ଦିଶାରୀ ବେମାର୍ ପଡ଼ିଲା । ଜର ଆଉ ଗୁଣ୍ଡଦୁଃଖା । ଗାଁର ପୁରୋହିତ ସେ, ଜଜମାନ ସେ, ଦାନ୍ଦବୁଢ଼ାର ଭକ୍ତ ଆଉ ପୂଜାରି । ବୁଢ଼ା ଦିଶାରି ଜଣକିଆ ମଣିଷ । ଦେଖାଶୁଣା

କରିବାକୁ ଇଚ୍ଛିଷ୍ଟ କେହି ନାହିଁ । ସାହୀବାଲଙ୍କର ଦୟା । ସେ ଲଙ୍କାମରି ଖାଉଥାଏ । ଯେଉଁପ୍ରକାର ଜଡ଼ିବୁଟି ଖାଉଥାଏ । ଘଷୁରି ଘୂଷୁରି ପଦାକୁ ଆସି ଜଳଜଳ ହୋଇ ଅନେଇଥିବା ଦାଦବୁଡ଼ାକୁ ଚୁହିଁ ବାରମ୍ବାର ଦଣ୍ଡବତ ହେଉଥାଏ । ଗାଁର ପିଲଙ୍କ ହାତରେ ମଗେଇଆଣି ଦାଦବୁଡ଼ା ପାଖ ହୁଙ୍କା-ବୁଡ଼ାର କାଦୁଅ ଗୁଣ୍ଡରେ କପାଳରେ ମାରୁଥାଏ । କାହିଁରେ କିଛି ଫଳ ହେଲା ନାହିଁ । ରୋଗଟା ଦିନୁଁ ଦିନ ବଢ଼ିଗଲା । ବର୍ଷାରେ ଓଦା ହୋଇ ଘର ଜୋଲେଇଥାଏ । କଣାଗୁଡ଼ିକ ବାଟେ ଦରଦର ପାଣି ପଡ଼ୁଥାଏ । ସନ୍ତସନ୍ତିଆ ଭୂଇଁରେ ଫିଙ୍ଗାଯାଇଥିବା ଉପରେ ଛିଣ୍ଡା ଅଖା ବିଛେଇ ତହିଁରେ ଫଟାମାଠିଆ ଘୋରି ହୋଇ ଧନୀରବୁଡ଼ା ପଡ଼ିଥାଏ । ଭୁଙ୍କୁରୁ ଭୁଙ୍କୁରୁ ହେଉଥାଏ । ମନକୁ ନିବିଷ୍ଟକରି ଦାଦବୁଡ଼ାକୁ ଧ୍ୟାନ କରୁଥାଏ । ଛାତିରେ ବ୍ୟଥା ବୋଲି ବାଁ ଛାତିରେ ହାତଟାକୁ ମାଡ଼ି ଧରିଥାଏ ।

ଧନୀରବୁଡ଼ା ଧ୍ୟାନ କରୁଥାଏ । ଉଞ୍ଚ କୁଦଟା, ତା ଉପରେ ଦାଦବୁଡ଼ା—ସାତବେଣ୍ଟିଆ ହୋଇ ହଣା ହୋଇଥିବା ଖଜୁରିଗଛର ଖଣ୍ଡା, ତହିଁରେ ମେଞ୍ଚା ମେଞ୍ଚା ସିନ୍ଦୂର ଜକ ଜକ ହୋଇ ଦିଶୁଚି । ମେଞ୍ଚା ମେଞ୍ଚା କଳା । ମୁଣ୍ଡରେ ପାଗ, ମୁହଁରେ ପ୍ରସନ୍ନ ହସ ସତେକି ସଦାସର୍ବଦା ଲାଗି ରହିଛି । ଭାବନାରେ ସାରା ପୃଥିବୀର ସୁଖ ଦୁଃଖ, ତେଣୁ କପାଳରେ ଏତେ ଗାର ଗାର । କି ସୁନ୍ଦର ସେ । ପାଖରେ ହୁଙ୍କାବୁଡ଼ା । କି ଦୟାଳୁ ସେ ଦାଦବୁଡ଼ା, କି ପରୋପକାରୀ ! ଆହା !

ଧନୀର ବୁଢ଼ା ଧ୍ୟାନ କରୁଥାଏ । ଏଇ ସତୁରି ବରଷର ଅଭିଜ୍ଞତାରେ ତା'ର ଆଖି ଯେତେଠି ସୁନ୍ଦର ରୂପ ଦେଖିଛି, ସବୁ ରୂପର ସବୁ ସୁନ୍ଦରମା ଏକାଠି କରି ଗଢ଼ ଯାଉଥାଏ ସେ—ଏହିପରି ରୂପ ସତେକି ବାହାରି ଆସୁଛି ଦାଦବୁଡ଼ା ଭିତରୁ । ତା'ର ବିଶ୍ୱାସ ହୁଏ ଦାଦବୁଡ଼ା ତା ବିଛଣା ପାଖେ ଘର ଆଲୁଅ କରି ଠିଆ ହୋଇଛି । ମୁରୁକି ମୁରୁକି ହସୁଛି ଆଉ କହୁଛି, ତୁ ପରା ମୋର ପୁଝାରି ! ତୁ ମୋର ଅତି ପ୍ରିୟ ! ତତେ ମୁଁ ଭଲ କରି-ଦେବି ନାହିଁ ଆଉ କାହାକୁ ଭଲ କରିବି ? କ୍ରମେ ରୋଗ ବଢ଼ିଗଲା, ଧନୀର-ବୁଢ଼ା ଆଉ କଥା କହିପାରିଲା ନାହିଁ । ବାଉଳା ଧରିଲା, ତଣ୍ଟି ଭିତରୁ ଘଡ଼ର ଘଡ଼ର ଶବ୍ଦ, ପାଟିବାଟେ ଘାଁ ଘାଁ ପବନ । ଛାତିରେ ଅସହ୍ୟ ଯନ୍ତ୍ରଣା । ବାଉଳା ପାଟିରେ ମଝିରେ ମଝିରେ ଚିଲ୍ଲାଉଥାଏ ଟାଏ ଟାଏ ସେ

କରେ । ତା’ର ସ୍ତ୍ରୀ କମଳର ନାଁ ଧରି, ନୋହିଲେ ପୁଅ ଝିଅଙ୍କ ଖୋଲିଆଉ, ଯେଉଁମାନେ କେଉଁଦିନୁ ମରିଛନ୍ତି । ଗାଁ ଲୋକେ ଦେଖିବାକୁ ଆସି କୁହାକୁହି ହେଲେ, ଦଶରିବୁଢ଼ା ଆଉ ବଞ୍ଚିବ ନାହିଁ, ମଲା ଲୋକର ଡୁମା (ପ୍ରେତାତ୍ମା) ଦେଖୁଛି ଆଖିରେ । ଗୋଟାଏ ଦିନ ପୁଅ ଝିଅଙ୍କୁ ଡାକି ଡାକି ସେ ଥକିଗଲା । ରାତିରେ କାଶିକ୍ ଶୁଙ୍ଖେର ଡମ୍ ତା ପାଖେ ଜଗିଥିଲା । ସକାଳୁ ଦଶରିବୁଢ଼ା ମରି କାଠ ହୋଇଯାଇଛି । ମୁହଁ ନେଫେଡ଼ ଦେଇଛି, ଆଁ ଟାଏ କରି ଦାନ୍ତ ନିକୁଟି ଯେପରି ସେ କାହାକୁ ଖତେଇ ହଉଚି, ଆଖି ତରାଟି ଦେଇଚି ।

ଗାଁରେ ହୋ ହୋ ପଡ଼ିଗଲା । ଦଶରିବୁଢ଼ା ବୁହା ହୋଇ ନିଆଗଲା ଦାଦିବୁଢ଼ା ବାଟେ ସେପାଖର ମଶାଣିକୁ । ଉଜ୍ଜ୍ୱଳ ଖରା ଫୁଟିଥିଲା ସେଦିନ । ଦାଦିବୁଢ଼ାର ଏକନିଷ୍ଠ ପୂଜାରି ଦଶରିବୁଢ଼ା ତା’ର ପ୍ରିୟତମ ଠାକୁର ଆଡ଼କୁ ଖତେଇ ହୋଇ ହୋଇ ଆଖି ତରାଟି ତରାଟି ମାଟିତଳକୁ ଗଲା ।

ବଞ୍ଚିବାକୁ ତା’ର ଭାରି ଆଶା ଥିଲା, ସେଥିପାଇଁ ଠାକୁରଙ୍କୁ ବି ଡାକିଥିଲା ସେ ବହୁତ ।

ମୃତ୍ୟୁ ସେ ବଡ଼ ଅସନା ଅବର୍ଜିଆ; କେତେ କୁତ୍ସିତ କେତେ କଦାକାର ହୋଇପଡ଼େ ଏକା ମୁହୂର୍ତ୍ତକେ ମଣିଷର ଏ ସୁନ୍ଦର ଦେହଟା, ତେଣୁ ଲୋକେ ତା’ର ନାଁ ଧରନ୍ତି ନାହିଁ । ପରଜା ବିଶ୍ୱାସ କରି କରି ବଞ୍ଚେ ଯେ, ସେ ମଲେ ବି ପୁଣି ଜନ୍ମ ହେବ । ଜନ୍ମ ହେଲା ପିଲାକୁ କହେ ତୁ ପୂର୍ବଜନ୍ମରେ ଏମିତି ସେମିତି ମଣିଷ ଥିଲୁ । ପୁଣି ଜନ୍ମ ହୋଇ ସୁଖ ଦୁଃଖର ମାଟିକାଦୁଅରେ ନେସି ହେବାକୁ ମନ କରି ସେ ଶେଷଦିନ ଯାଏଁ ମଉଜ କରୁଥାଏ । ତା’ପରେ ଟଳିପଡ଼େ । ମୃତ୍ୟୁର ନାଁ କେହି ଧରନ୍ତି ନାହିଁ, କିନ୍ତୁ ତା’ର ସମସ୍ତ ବୃଷ୍ଟି ସେ ଖୋଲିଆସେ, କେତେ ଉପାୟରେ ଜର, ଗୁଣିବଥା, ବାଘଖିଆ, ମାମୁଲି ଏତିକି, ଆଉ ତ କେତେ ଅଛି ।

ଦଶରିବୁଢ଼ା ଯିବା ପଛେ ପଛେ ଜର ଗୁଣି ବଥାରେ ଆହୁରି ଦଶ ବାରଜଣ ଗଲେ । ସବୁ ଗାଁରେ ଜର ଗୁଣିବଥା । ଦାଦିବୁଢ଼ା ପାଖେ ଅସଂଖ୍ୟ ପୂଜା ଦିଆହେଲା, ସେଇ କାରଣରୁ ବୋଧହୁଏ ମୋଟେ ଦଶ ବାରଜଣ ମରିସାରିଲା ପରେ ଜର ଗୁଣିବଥା ଛାଡ଼ିଗଲା । ନୋହିଲେ କିଏ

ଜାଣିଚ, ଗାଁସାକ ମରଯାଇଥାନ୍ତେ ପରା ଲୋକେ କହୁଥିଲେ । ଏଣେ ମେଘ ଗୁଡ଼ଗୁଡ଼ୁଛି, ଶରତ ଆସିଲୁ । ଭୂଇଁର ଓଦା ନଗିଡ଼ ଯାଇଛୁ । ସେଇ ନଗିଡ଼ା-ନଗିଡ଼ରେ ଗାଁର ଧୂଳମଳ ଗୁଳଗଲା, ଗାଁରେ ଆଜ କଷ୍ଟ ହେଲା ନାହିଁ । ଲୋକେ ଠାକୁର ପାଖେ ପୂଜାଦେଇ କହୁଲେ ଏମିତ ଚୋର ପାଦୁକା ଶୀତଳ ଥାଉ ଧାଡ଼ବୁଡ଼ା, ଆଉ କଷ୍ଟ ଦେ'ନା ।

—୧୭—

ଗ୍ରାମ ନାଇକ କାମ କମାଣିରେ ମନ ଦେଇଥିଲା । ଧାଂଡ଼ା ବକ୍ଡ଼ା (ହଳଆ) ମାନଙ୍କୁ ନେଇ ଚଲ ମରାମତ୍ କରିବା, ଫସଲ ଜପୁଜେଇବା, ସକାଳୁ ସଞ୍ଜଯାକେ ଜବର କାମ । ତା'ର ସ୍ତ୍ରୀ ମଧ୍ୟ ଘରେ ରହେ ନାହିଁ, ମାଣ୍ଡିଆ ପେଜ୍ ମଢଏ ସିଝେଇ ଦେବାକୁ ଯେତକ ସମୟ ଲାଗେ ମୋଟେ ସେତକ, ଅନ୍ୟବେଳେ ସେ ବି ଯାଏ କ୍ଷେତକୁ, ଗୋବର ପକାଏ, ଖତ ସଡ଼ାଏ, ବଗୁଉଛି, ନଜାଣି ଗୋପାଣି କରେ ।

ଠେଙ୍ଗାଜାଳର ନାଁ ସେମାନେ ତୁଣ୍ଡରେ ଧରନ୍ତି ନାହିଁ ।

ବେଳ ଅଧା ଡଙ୍ଗାଣ ଘରଟା ଆଗିରେ ଖୋଞ୍ଚା ପଣ ସବୁବେଳେ ଉଷୁଥାଏ ମୂହିଁସାମ୍ନାରେ, ଦେଖିବାକୁ ମନହୁଏ ନାହିଁ । ଭାଙ୍ଗିଦେବାକୁ ହାତ ଯାଏ ନାହିଁ । ତେଣୁ ମନେ ପଡ଼େ ନାହିଁ ସ୍ପଷ୍ଟ । ଦେଖି ଦେଖି ସେ ବି ଦେହସହା ହୋଇଗଲାଣି । ବର୍ଷା ମାଡ଼ରେ କାନ୍ଥଗୁଡ଼ାକ ଭୁଷୁଡ଼ି ପଡ଼ଲାଣି ଥାଇ ନ ଥିଲା ପରି ।

ହନମାନ ମାଙ୍କିଡ଼ାଙ୍କ ପଥର ଜଙ୍ଗଲ ସାଙ୍ଗେ ମିଳାମିଶା । ଦେହ ଘଷାଦବି—ଅନ ବ୍ରହ୍ମଆଦି ସେମାନେ, ଆଜ ତାଙ୍କଠି ଭଲ ନାହିଁ ମନ ନାହିଁ, ଦମ୍ ନାହିଁ ଜାନ ନାହିଁ । ମାଣିକେ (ବଡ଼ଳଆ) ଲେଙ୍ଗେଂ ମୋକ ବି ମନର ସଳର ହୁଅନ୍ତି । ଗୋବର ମୋକ, ତା ସାଙ୍ଗେ ମାଙ୍ଗେ ମଣିଷ । ମାଙ୍କି ମଣିଷ ବୋଲି ବଳକା ଶରଧା ଦେଖାଏ ନାହିଁ । ମାଙ୍କିର ମୂହିଁରେ ମୂହିଁ ଯୋଡ଼ଦେଇ ଡକାପାଡ଼ିବାକୁ ମଣିଷକୁ ମାଙ୍କି ମଦତ ହଏ ନାହିଁ ।

ଗ୍ରାମ ନାଇକକୁ ଭାବିବାକୁ ବେଳ ମିଳେ ନାହିଁ ।

ଯେତେବେଳେ ମନର ଚେତନା ଜୀଅନ୍ତା ସାଙ୍ଗୀ ଖୋଜେ, ରାମ ନାଇକ ଦେଖେ ଅସରନ୍ତି ଜୀବନ ସବୁଠି । କ୍ଷେତରେ ପାଚର ଲହଡ଼ି ଖେଳୁଛି, ବାଡ଼ରେ ପରବାପତର । ଚଷାପାହାଡ଼ ମୁଣ୍ଡରେ ଜଡ଼ାଗଛର ଜଙ୍ଗଲ । ମଝିରେ ବଡ କାଙ୍ଗୁଲା (ହରଡ), ତଳକୁ ଟିକଏ ସୁଆଁ କ୍ଷେତ, ଆହୁରି ତଳକୁ ଢେଉ ଢେଉକା ପଦରରେ ମାଣ୍ଡିଆ କ୍ଷେତ । ପଦର ଧାନ, ଖୋଲ୍‌କ୍ଷେତରେ ବହଳ ଧାନ । କୃଷୀର ସାଙ୍ଗୀ ଏହିମାନେ, ତା'ର ହାତର କରାମତ । ତା'ର କାବ୍ୟ କବିତା । ତା'ର ପୁଅ ଝିଅ । କେତେ ଝିନ୍‌ଝିଟ୍ ଏମାନଙ୍କ ସାଙ୍ଗେ । ବର୍ଷକୁ ବର୍ଷ ଏମାନେ କକାଶ-ବେଡ଼ା (ପିଲାପଣ)ରୁ ଉଶଆବେଡ଼ା (ଯୁବାପଣ)କୁ ଆସନ୍ତି । ଏଇ ଫସଲର ଜଙ୍ଗଲ ଭିତରେ କଏ କେଉଁଠି ବସିପଡେ । ଏଇ ବିପୁଳ ସର୍ଜନକୁ ଦେଖୁ ଦେଖୁ ତା'ର ମନର ଟିକ ଉରମାନ ସାନ ଦୁଃଖ ଗ୍ଲାନି କେଉଁଆଡ଼େ ଉଭେଇଯାଏ ଫସର ଫାଟି । ଆପଣାର ସୃଷ୍ଟିରେ ଚିରସବୁଜ ସେ, ପରମପିତା ଦାଦବୁଢ଼ାର ପୁଣି ଚରମପିତା କୃଷୀ ପରଜା ।

ରାମ ନାଇକ ଭାବବସେ ନାହିଁ ଏତେ ପାଚର ବ୍ୟବସ୍ଥା କ'ଣ ହେବ । କୌଣସି ପରଜା ଭାବେ ନାହିଁ । କବି ବି ଭାବେ ତା'ର କବିତାର ଭବିଷ୍ୟତ ସାତପାଞ୍ଚ । କେତେଠି ସାହୁକାର ଆଗରୁ ଦାଦନ ଲଗେଇ ଦେଇଛନ୍ତି । ପାଚ କଟା ହେଉ ହେଉ ତାଙ୍କର ଲୋକ ଆସି ମାପିନେଇ ଚାଲିଯିବେ । କେତେଠି କରଜ ଅଛି । ପାଚରେ କରଜ ସୁଝାହେବ । ଆଉ ଶିମ୍ଭୁ, ଦାସ୍ତୁ, ଜମାନ୍, ଅଧିକାରୀ, ଜୋଗମାଳା,—ଏଟା ସେଟା କେତେ-କଥା । କିନ୍ତୁ ସେ ପାଚକୁ ଅଟେଇ ବସି କାମ ଚଳିବ ନାହିଁ । ପାଚ ତା'ର କବିତା, ଗୀତ ମାଡ଼ୁଛି, ଗାଇବାକୁ ହେବ ।

ପୁଅ କଥା ମନେ ପଡ଼ିଲେ ଫଁ ଫଁ ଦୀର୍ଘଶ୍ୱାସ । ମା'ର ହ'ଟୋପା ଲୁହ, ବାପର କୋପ, ମନ ଅଶାନ୍ତ । ଆପଣାଠାରୁ ଅବ୍ୟାହତି ପାଇବା ପାଇଁ ସେମାନେ କାମରେ ଲୋଟିପଡ଼ନ୍ତି । କାମରୁ କାମ ଜନ୍ମହୁଏ । ତର ମିଳେ ନାହିଁ । ସଡ଼ାମାଣ୍ଡିଆ ଜାଉର ଲହାମଦ ଆଉ ଗ୍ରେଇ ଲୁଚି ମହୁଲମଦ ଦେହର ସବୁ ଘୋଳାବଥାକୁ ଭଲ କରିଦିଏ । ଭାବ ହୁଏ ନାହିଁ ।

—୧୬—

ଏ ବର୍ଷ ଏ ଗାଁରେ ଅମଙ୍ଗଳ ପଡ଼ିଛି । ଗୋରୁ ଗାଈଙ୍କ ଦେହରେ କ'ଣଗୁଡ଼ାଏ ଫଳ ଯାଉଛି । ସେମାନେ ଛେର ହେଇ ହେଇ ମରଯାଉଛନ୍ତି । କୁକୁଡ଼ାଗୁଡ଼ାକ ବି ଚୂନପାଣି ପର ଛେରୁଛନ୍ତି । ଘୁମେଇଁ ଘୁମେଇଁ ମର-ଯାଉଛନ୍ତି । କାହୁଁ ଆଇଲା ଏ ରୋଗ, ଯୁଆଡ଼େ ଶୁଣିଲେ ଏକା କଥା ।

ନୂଆ ଦଣାର ରୁଫାଜାନ ଯେ ପୁରୁଣା ଦଣାର ଅପେକ୍ଷା ଅଳ୍ପ ଜାଣେ, ତା ନୁହେଁ; ବରଂ ସେ ଅଧିକ ନିଷ୍ଠାପର । ଅଧିକ ପରିଶ୍ରମ କରେ । ଅଳ୍ପ ମଦ ପିଏ । କିନ୍ତୁ ସେ ଯେତେ ଉପାୟ କଲା ସବୁ ହାରିଗଲା, କାହିଁରେ ଏ ଅମଙ୍ଗଳକୁ ହଟେଇ ପାରିଲା ନାହିଁ । ଦାନ୍ଦବୁଢ଼ା ପାଖେ ନାଚ ନାଚ ଧାଂଙ୍ଗୀମାନଙ୍କର ଗୋଡ଼ରୁ ଚମ ଘୁଞ୍ଚିଗଲା । କେତେ କୁକୁଡ଼ା ପାଇ ଯେଉଁମାନେ ଆୟୁଷବଳରୁ ରୋଗ ଦାଉରୁ ବଞ୍ଚି ଯାଇଥିଲେ, ସେମାନେ ହଣା ହୋଇ ବନପଡ଼ ଠାକୁର ଦେବତାଙ୍କୁ ତୁଷ୍ଟି କରିବାକୁ ଚେଷ୍ଟା କଲେ । ବହୁତ ମଦ ଢଳାହେଲା, ବହୁତ ପ୍ରକାରର ଫିକର ହେଲା, ସବୁ ବୃଥା ।

ଆଗେ ଖ୍ରୀଷ୍ଟାନ୍ ସାହିର ବୂଢିଆ ଡମ୍‌ମାନେ ନିଜଭିତରେ କଥା ଘଷା ହେଲାବେଳେ ହିନ୍ଦୂଲୋକଙ୍କର ଏ ପୂଜାପଦ୍ଧତିକୁ ହସରେ ଉଡ଼େଇ ଦେଉଥିଲେ । ଯେମେ ରୋଗ ତାଙ୍କର ଜନ୍ତୁମାନଙ୍କୁ ବି ପଦାକଲା, ସେମାନେ ମଣ୍ଡଳୀ ସଭା ଡାକଲେ । ପରମପିତା ପରମେଶ୍ୱରଙ୍କୁ ପ୍ରାର୍ଥନା ଦେଇ ବାରମ୍ବାର ଜଣାଣ କଲେ । ଗୋରୁମାନଙ୍କ ପାଇଁ କୁକୁଡ଼ାମାନଙ୍କ ପାଇଁ ଅଶେଷ ବିନୟ ହୋଇ ଗୁହାରି କଲେ ।

କିଛି ଫଳ ହେଲା ନାହିଁ ।

ଦାନ୍ଦବୁଢ଼ାର ଗୋଡ଼ ତଳ ଖାଲରେ ମଲା ଗୋରୁଙ୍କ ମାଉଁସ ଖାଇବାକୁ କାଉ ଶାଗୁଣା ବିଲୁଆ କୁକୁର କଳଗୋଳ ଲଗେଇଲେ । ଖାଲି ଅଶୁଭ ବୋବାଳି । ଏମିତିଆ ଜହ୍ନରାତି ହୁଏ, ଜହ୍ନରୁ ଫାଳେ ପାହାଡ ଉପରେ ଜଳ ଲଗିଥାଏ । ଅନ୍ଧାର ଭିତରେ କେଉଁଠି କେଉଁଠି ଅଗ୍ନିଏ ଲେଖା ଜଳକା ଆଲୁଅ । ଗୋରୁଗାଈ ବାନ୍ଧିବା ବେଳ ଗଡ଼ିଯାଏ,

ଦାଣ୍ଡରେ ନିଆଁ ପାଖେ ବସି ଲୋକେ ଖବର ପକେଇଥାନ୍ତି, ମୋର ହଳମୁଣ୍ଡ ମଲେ, ଏବର୍ଷ ଚାଷ କେମିତି କରିବ ? ମୋର ସାଫା ସମସ୍ତେ ମରିଗଲେ । ନିଆଁ ଅଟାଳିଏମାନ ଧରି ଗୁହାଳ ଘରେ ପଶି ଘରଣୀମାନେ ଏପାଖ ସେପାଖ ଅନେଇ ରହନ୍ତି ବିକଳ ହୋଇ, ଖାଲି ଖୁଣ୍ଟିଗୁଡାକ, କେଉଁ ଗୋଟାକ ଲଙ୍ଗଳା କେଉଁଥିରେ ପଘାଟା ଲଟକିଛି । କେଉଁ କଣରେ ଗୋଟିଏ ଦିଓଟି ଗୋରୁ ଶୋଇ ରହିଛନ୍ତି । ବାକି ସବୁ ଫାଙ୍କା ।

ସେମାନେ ବି ଘରର ଲୋକ, ଏଇ ଗୋରୁମାନେ ଆଉ କୁକୁଡ଼ାମାନେ—ମଣିଷର ସଂସ୍ପର୍ଶରେ ଆସି ବେଳ ଦେଖି ଥାନ ଦେଖି ତାଙ୍କର ବି ଗୋଟାଏ ଗୋଟାଏ ଇତିହାସ ଥିଲା । ମଣିଷର ସାଙ୍ଗୀ ସେମାନେ । ଜଙ୍କର ମାଟିର ଦିଗ୍‌ବିଜୟୀ ବୀର । ଆଜି ସେମାନେ ଚାଲି ଯାଉଛନ୍ତି । ବିକଳ ଆଖିରେ ଲୁହ ଫୁଟି ଫୁଟି ବାହାରି ବାହାରୁ ନାହିଁ, ଚିରଦିନକୁ ଶେଷ ।

ରୁପାଜାନର ଇଲଇଜ୍ ଖଣ୍ଡେ ନାହିଁ । କିନ୍ତୁ ତା'ର ଆଦର କମି ନାହିଁ । ଦିଶାରି ହେବା ପୂର୍ବରୁ ସୁଦ୍ଧା ସେ ଜଡ଼ିବୁଟି ଔଷଧମୋଷଧ କାରବାର ଭଲ ଜାଣିଥିଲା । ଏବେ ତା ସାଙ୍ଗେ ମିଶିଛି ଠାକୁରଙ୍କ ଆଶୀର୍ବାଦ, ଗୋଷ୍ଠୀର ପୌରୋହିତ୍ୟ । ସେ ଚାଷରୁ ଫେରି ଝୁଲିମୁଣି କାନ୍ଧରେ ପକେଇ ଗୋରୁଶାଳରୁ ଗୋରୁଶାଳ ବୁଲୁଥାଏ, କେଉଁଠି ଧୂପ ଦିଏ, କେଉଁଠି ଖାଲି ମନ୍ତ୍ର ବୋଲି ବୋଲି ବେମାରିଆ ଗୋରୁମାନଙ୍କ ଗାଲରେ ଚଟକଣା ପିଟେ, କେଉଁଠି ଔଷଧ ଟିକିଏ ଦିଏ । ତା'ର ଚିକିତ୍ସାରେ ଗୋରୁ ମରନ୍ତି ତଥାପି ସେ ନ ଗଲେ ନ ଚଳେ ।

ଲୋକେ କହନ୍ତି—ଆଜି ଯଦି ପୁରୁଣା ଦିଶାରି ବଞ୍ଚିଥାନ୍ତା—

ରୁପାଜାନ ପରିଶ୍ରମ କରେ ସିନା, ଜାଣେ କି ନ ଜାଣେ କି—

କିରେ ଦିଶାରି, କେମିତି ପୂଜା ଦେଲୁ, କାହିଁ ବଞ୍ଚିଲେ ନାହିଁ ତ, ମୋର ତିନିମୁଣ୍ଡଯାକ ଗଲେ—

ରୁପାଜାନକୁ ଆଶ୍ଚର୍ଯ୍ୟ ଲାଗେ, ଏବେ ଲୋକେ କେଡେ ଅକୃତଜ୍ଞ । ହିଁ ଦୁନିଆର ରୀତି ତ ଏହିପରି, କ'ଣ କରାଯିବ । ସେ ସମସ୍ତଙ୍କୁ ଖୁସି କରିବାକୁ ଚେଷ୍ଟା କରେ, ଏକୁଟିଆ ଜୀବନଟାକୁ ବିସର୍ଜନ ଦେଇ ଦେଇ

ବଣଭିତରେ ପଶି କେତେ ଅଚିହ୍ନା ଗଛ ଲଟା ଯୋଗାଡ଼ କରି ଆଣେ । କେତେ ପ୍ରକାର ଜନ୍ତୁଙ୍କର ଶୁଖିଲା ଧୂଅ, କେଉଁଠୁ ହାଡ଼ ଆଣେ, କେଉଁଠୁ ଗୋଡ଼ ଆଣେ, ଭୂଟରୁ ଭୂଟୁରୁ ହୋଇ ନାନାପ୍ରକାର ଅଙ୍ଗଭଙ୍ଗୀ କରି ଲୋକଙ୍କୁ ଦେଖାଇ ଦେଖାଇ ସେ ଔଷଧ ତିଆରି କରେ । ତଥାପି ତା କାନରେ ବାଜେ ଲୋକଙ୍କର ଟିପ୍ପଣୀ—ରୁଫାଜାନ ପାରିବ ନାହିଁ, ନୂଆଲୋକ ଦେଖିବା—ଗୋଟେ କନ୍ଧ ଦଶାରି ଦେଖିବା—ଗାର୍ଡ଼ାଖୋଲରେ ବଙ୍କୁ ସାଓଁ ତାର ଭାଇ ଟିକ୍ରୁ କନ୍ଧ ଅଛି । ଲୋକେ ଗାଁ ନାଇକକୁ ବ୍ୟତିବ୍ୟସ୍ତ କରିପକାନ୍ତି, ବାରିକ ଝୁଁଟେର ଡମ୍ ସମସ୍ତିଙ୍କ କଥାକୁ ହୁଁ ହାଁ କରି ଆହୁରି ବଢ଼େଇ କହେ । ନାଇକ ମୁଣ୍ଡ ଟୁଙ୍ଗାରେ, ରୁଫାଜାନ ଦେଖେ ।

ଦିନେ ସକାଳେ ରୁଫାଜାନ ଗାଁ ଲୋକଙ୍କୁ ଏକାଠି କଲା । ତା'ର ବାଳ ମୁକୁଳା ହୋଇଥିଲା, ଆଖି ନାଲି ନାଲି ଦିଶୁଥିଲା, ଆଖିପତା ବସି ଯାଇଥିଲା । ରୁଫାଜାନ କହିଲା, କାଲି ରାତିରେ ଦାଦିବୁଢ଼ା ମତେ ସପନେଇଁ ଥିଲା, କି ଭୟାଂକାରିଆ ଦିଶୁଥିଲା ସେ, କହିଲା, ଗାଁରେ ଘୋର ଅନାଚାର ଚାଲିଯାଇଛି । ଗାଁ ନାଇକର ପୁଅ ପରଜା ଜାତି ହୋଇ ଡମୁଣୀ ମାଁଇନା ନେଇ ପଳାଇଗଲା । ନାଇକ ବି ଜାତି ହେଲା ନାହିଁ, ଭୋଜଭାତ ଦେଲା ନାହିଁ, ସେମିତି ରହିଗଲା । ମୁଁ ଦାଦିବୁଢ଼ା, ସମସ୍ତିଙ୍କ ଉପରେ ମୋର ଅଧିକାର, ମତେ ଅମାନ୍ୟ କଲେ କେମିତି ସହିବ ମୁଁ କହ ତ । ଏହାର ପ୍ରତିକାର କର, ନହେଲେ ସବୁ ନଶେଇ ଦେବି, ସବୁ ନଶେଇ ଦେବି, ଜାଣି ଥା । ଗାଁର ପାଞ୍ଚ ପଞ୍ଚାଏନ୍ତ ବସିଥିଲେ, ସବୁ ବଡ଼ ସାନ । ନାଇକ ବେକ ଭାଙ୍ଗିଦେଲା, କହିଲା—ମୋର ସବୁ ସରିଗଲା, ଗୋ ଗଲା, ପୋ ଗଲା, କେବେ ତ ମୁଁ ଦାଦିବୁଢ଼ାକୁ ଅମାନ୍ୟ କରି ନାହିଁ । କାହିଁକି ସେ ଏମିତି କହିଲା ? ରୁଫାଜାନ କହିଲା, ମତେ ସପ୍ନ ହେଲା ମୁଁ କହିଲି, ଯାହା ଦେଖିଲି, କହିବାକୁ ମତେ ହୁକୁମ୍ ହେଲା ତା କହିଲି, ମୁଁ କ'ଣ ମନରୁ କଛି ଲଗେଇ ଦଉଛି ? ସମସ୍ତେ ମୁଣ୍ଡ ଟୁଙ୍ଗାରି କହିଲେ, ସତ୍ କଥା, ସତ୍ କଥା ।

ଅତଏବ ଗ୍ରାମ ନାଇକ ପ୍ରାୟଶ୍ଚିତ୍ତ ଭୋଜ ଦେଲା ।

ସେତେବେଳକୁ ବଦଳ ଶୀତ ପଡ଼ିଗଲଣି, ମଞ୍ଜି ଥରେଇ ଦେଉଛି, ଗାଁର ବାରପଣ ଗୋରୁ ଗାଈ ଚଉଦପଣ କୁକୁଡ଼ା ମରି ସାରିଲେଣି, ଅନହୁତି ରୋଗ ଛୁଡ଼ିଗଲା ।

ରୁପାଜାନ ଗର୍ବରେ ବେକ ଫୁଲେଇ ଦେଇ ଘରଆଡ଼େ କହି ବୁଲିଲା—ଦେଖିଲ ତ, ମୁଁ କ'ଣ କହୁଥିଲି, ତା'ର ପ୍ରତିଷ୍ଠା ବଢ଼ିଗଲା । ଗାର୍ଡାଖୋଲର ଟକ୍ରୁ କାଳି ନାଁ ଆଉ କେହି ତୁଣ୍ଡରେ ଧରିଲେ ନାହିଁ, ତା'ର ପଞ୍ଚା ଚିରସ୍ଥାୟୀ ହେଲା ।

ଘରପାଖର ବର୍ଷାଧୂଆ ଚକ ଚକ ଗୋରୁହାଡ଼କୁ ଦେଖି ଦେଖି ଲୋକେ ଦୀର୍ଘ ନିଶ୍ୱାସ ପକେଇଲେ, କେହି କେହି କହିଲେ, ଆଗରୁ ଠିକଏ କହିଲୁ ନାହିଁ ରୁପାଜାନ— ।

ରୁପାଜାନ କହିଲା—ଆରେ, ମେଘ ବାଘ ଅଧିକାଶ୍ରି ଆଉ ଦେବତା, ସ୍ତ୍ରୀଙ୍କର ମନର କଥା କାହାକୁ ଜଣା, ଏଁ—ଯେତେବେଳେ ଯୋଉଟା ମନ ହୁଏ ତାଙ୍କର, ମୁଁ କ'ଣ କରିବ—ଏଁ ?

କିନ୍ତୁ ଶେଷଯାକେ ରୁପାଜାନ ଆପଣାର ପ୍ରଭାବରେ ଅମଙ୍ଗଳକୁ ରୋକିପାରିଲା ନାହିଁ । ଗୋରୁ ମଡ଼କ ନ ଯାଉଣୁ ସେଦିନ ଧରିଦେଲା, ଏକାବେଳକେ ଗାଁର ଅନେକ ଧାଂଡ଼ୀ ବିଧବା ହୋଇଗଲେ—ସ୍ୱାମୀପରେ କୁଆଡ଼େ ବର୍ଷେ ବାହାଘର ବନ୍ଦ । ସାରିଆଜାନ୍ ଗଲା, ସାରିଆଫୁଲ ଗଲା—ବୋଡ଼ି, ମୋଡ଼ି, ରଙ୍ଗିଆ, ଯାଫ, ସମସ୍ତେ ଗଲେ, ଦିନାକେତେ ଭୋଜ ଘାତ ନିଶାପାଣି ନାଚରେ ଭଲ କଟିଲା । କିନ୍ତୁ ଠିକ୍ ମଗୁଶୀର ଶେଷଆଡ଼କୁ ପାଖ ଜଙ୍ଗଲରୁ କାଠକଟାଳି ଲେଉଟି ଆସି ଦିନେ କହିଲେ, ଯେ ବଣ ଭିତରେ ବଡ଼ ବାଘର ପାହୁଲ ପଡ଼ୁଛି କେତେଠି । ଆଉ ତହିଁର ପାଞ୍ଚଦିନ ପରେ, ସଞ୍ଜବୁଡ଼େ, ଠିକ୍ ଗାଁ ଦେଖନ୍ତାଟାରେ ଗୋଟାଏ ପୋଡ଼ ହୋଇଥିବା ଚନ୍ଦା ପଦରରେ କିରୁ ପରଜାକୁ ବାଘ ଧରିଲା । ଲୋକେ ଭୟରେ ଥରିଲେ । ରୁପାଜାନ ପୂଜା ବିଧାନ କରି ସେ ବଣଟାକୁ କିଳିଦେଲା । କେହି ସେଠିକି ଗଲେ ନାହିଁ । କାରଣ ଲୋକଙ୍କର ବିଶ୍ୱାସ, କିରୁ ପରଜାର ପ୍ରେତାତ୍ମା ବାଘଡ଼ୁମା ହୋଇ ବାଘକୁ ଅନ୍ୟାନ୍ୟ ଲୋକଙ୍କ ପାଖକୁ ନେଇଯିବ । ତିନିଦିନ ପରେ ଦି'କୋଶ ଦୂରରେ ଥିବା ଚେଣ୍ଡ଼ୀଗୁଡ଼ା ଗାଁର କୋମନା ସାଓଁତା

ଲକକୁ ଯେଉଁ ଦନ ବାଘ ଧରଲା, ରୁପଫାଳାନ ବାହାସ୍ଫୋଟ ମାର କହବୁଲଲା, ଦେଖିଲ ତ, ବାଘକୁ କେମିତ ଭଗେଇ ଦେଲ ଏବଣରୁ ସେ ବଣକୁ । ଠିକ୍ ସେଦନ ଉପରଓଳ ଏଇ ଗାଁର ନାଡୁ ପରଜା ହଜଲା ବଳଦ ଖୋଜବାକୁ ଯାଇଥିଲା, ତାକୁ ବାଘ ଖାଇଲା । ତାପରେ ପରେ ଦନାକେତେ ଲଗାଏତ ଘର କୁହୁଡ଼ିଆ ପାଗ ଘୋଟିଲା, ଲୋକେ କହଲେ 'ବଘେଇ ପାଗ', କନ୍ତୁ ତା ବୋଲ ସବୁବେଳେ ଘରେ ବସି ରହଲେ ତ ଚଳବ ନାହିଁ । ହାଟକୁ, ବାଟକୁ, ଷେତକୁ, କାମ କମାଣିକୁ ଯିବାକୁ ପଡ଼ିବ, ପଞ୍ଚା ପଞ୍ଚା ହୋଇ ଲୋକେ ଅତ ହୁସିଆରରେ ବୁଲଲେ । ତହିଁରେ ବ ରକ୍ଷା ନାହିଁ । ଘାଟିବାଟେ ଦଶଜଣ ପନ୍ଦରଜଣ ଲୋକ ଚାଲଥାନ୍ତି । ବାସ୍ତା କୁକୁର ପର ବାଘ ମାଡ଼ିଆସି ଘୋସାର ନେଇଯାଏ । ହେଲା ସେଦନ, ଗାଁ ମାଇପେ ଗାଧୋଉଥିଲେ ମୁଗନ ନଈରେ । ତୁଠ ଉପରେ ଆସି ବାଘଟା ଶୋଇ ରହଲା । ଜଭ ଲହ ଲହ କରୁଥାଏ । ମାଇପେ ଲଙ୍ଗଳା ହୋଇ ଗାଧୋଉଥାନ୍ତି । ପିନ୍ଧା ଲୁଗାତକ ତୁଠ ପାଖ ଝୋଡ଼ଗଛରେ; ଭୟ ଲାଜକୁ ବ ପଘଭୂତ କଲା, ମାଇପେ ପାଟିକଲେ । ଗାଁ ଭିତରୁ ଚାଲଣି ପଗ୍ଚଶ ଲୋକ ଠେଙ୍ଗା ଭାଲା ଧର ଉନ୍ଧାଇବାରୁ ବାଘଟା ପଳେଇଗଲା । ଦନ ଦପହରେ ଗାଁ ଘରପାଖେ ଡିପ ପଦର ଭୂଇଁରେ ସେ ଡିଆଁମାରେ । ବେଳେବେଳେ ଟିକଏ ଅନ୍ଧାର ପଡ଼ିଗଲେ ଜଳ ଜଳ ଦ'ଟା ତାରା ପର ତା'ର ସାବ୍ଜା ଇଟାଳିଆ ଆଖିଦ'ଟା ଏଠି ସେଠି ଜଳ ଲାଗିଥାଏ । ରୁପଫାଳାନ ଉଇଁରିଆ ଦେଲା । ହାତରେ ବେକରେ ଅଣ୍ଟାରେ ଲୋକେ ପୁଣି ଗାରଡ଼ ମନ୍ତରେ ସିଦ୍ଧା କେତେ ଜନସ ବୋଝେଇ ହୋଇଥାନ୍ତି, ତଥାପି ତାଙ୍କୁ ବାଘ ଧରେ । ଏକା ମାସକ ଭିତରେ ସ୍ତ୍ରୀ ପୁରୁଷ ହୋଇ କୋଡ଼ିଏ ଜଣକୁ ବାଘ ଖାଇଲା, ତଥାପି ବଘେଇ ବନ୍ଦ ହେଲା ନାହିଁ ।

ଗାଁ ନସିଗଲା । ଏମିତ ବଘେଇ କେବେ ହେଲେ ଦେଖା ନ ଥିଲା । ଅନ୍ୟାନ୍ୟ ପାଖତଳର ଗାଁରେ ବାଘ ଖାଏ, କନ୍ତୁ ଏ ଗାଁଟା କେମିତ କପାଳ ଜୋରରେ ବଞ୍ଚିଯାଏ, ପାଞ୍ଚ ବର୍ଷରେ ଗୋଟାଏ ହେଲେ ବହୁତ ହେଲା ।

ଆଶଙ୍କାରେ ଘୁଟ ଦୁଲୁକଲା । କ'ଣ ହବ ? ନାଇକ ମୁଣ୍ଡରେ ହାତଦେଇ ବସିପଡ଼ ଭାବେ, ଶିରୁ ଦଆସିବ କୋଉଠୁ, କାଲ ସକାଳେ

ରାଜାଘର ଶବନ ଆସି ମାଗି ପକେଇବ । ଉଇଚ ଗ୍ରାବ ଗ୍ରାବ ହଇରାଣ । ଜଙ୍ଗଲ ଜାଗା ତ, କାଠଖଣ୍ଡେ ଆଣିବାକୁ ହେଲେ ବଣକୁ ଯିବାକୁ ପଡ଼ିବ । ଏ ଗାଁ ଛାଡ଼ି ସେ ଗାଁ ଗଲେ ବଣ । ଏତେ କଥା କାହିଁକି, କ୍ଷେତରେ ଚାଷ ବେଉସା କଲେ ସୁଦ୍ଧା ପାଖରେ ବଣ । ବଣ ଭିତରେ ବାଘ ଲୁଚିଥିବ, କୁଆଡ଼୍ ଦୌଡ଼ି ଆସି ଧରି ପକେଇଯିବ !

ହଠାତ୍ ବଡ଼ସକାଳେ ବୁଢ଼ା ଜମାଦାର ଜାନ ଗାଁ ମୁଣ୍ଡରେ କର-ପଟିଆ ହୋଇ ଠାଏ ଝାଡ଼ାଫେର ବସିଥାଏ । ସେଠି ଜଙ୍ଗଲ ନାହିଁ, ଖାଲି ଫିରଘାସ ଗୁଡ଼ିତ ଉଞ୍ଚରେ ବଢ଼ିଥାଏ, ଗ୍ଭଲଯାଇଥାଏ ମୁଗନ ନଈକୂଳକୁ ବୋଲି । ହଠାତ୍ ବାଘ ଆସିଲା ତାକୁ ଧରି ନେଇଗଲା, ଗାଁରେ ହାହାକାର ପଡ଼ିଗଲା ।

ଏତେ ଦୁଃଖରେ ସୁଦ୍ଧା ଲୋକେ ବାଧ୍ୟହୋଇ ପଦାକୁ ବାହାରନ୍ତି । ନୋହିଲେ କ୍ଷେତର ପାଚିଗଣ୍ଡିକ ତଳେ ଝଡ଼ିପଡ଼ିବ । ଖାଇ ବଞ୍ଚିବାକୁ ଆଉ କିଛି ନାହିଁ । ଚଷା ବଳଦତକ ମରି ସାରିଛନ୍ତି । ଆଉ ବର୍ଷକୁ ଚାଷ ବେଉସା ହେବ କେମିତି ତା'ହିଁ ଜଣା ନାହିଁ । ଆଉ ଯଦି ଏ ବର୍ଷର କ୍ଷେତର ପାଚି ଘରକୁ ନ ଆସେ, ଲୋକେ ଯାକୁ ଯାକୁ ହୋଇ ମରିଯିବେ ।

ସବୁଲୋକ ଏକାଠି ହୋଇ ଠେଙ୍ଗା ବର୍ଛା ଟାଙ୍ଗିଆ ଧରି ଆଜ ଯ୍ୟା କ୍ଷେତର, କାଲି ତା କ୍ଷେତର, କଟାକଟି କାମ କରିଦଅନ୍ତି । ବେଶୀ ଲୋକ ହୋ ହୋ ହେଉଥିଲେ ବାଘ ଆସିବ ନାହିଁ । କାମ ଧନ୍ଦା ସାରି ଗ୍ଭଲେ ଥିର ହୋଇ ଗାଁରେ ଥାଆନ୍ତି, କୁଆଡ଼କୁ ବାହାରନ୍ତି ନାହିଁ, ଝାଡ଼ା ଫେରନ୍ତି ଓଳିତଳେ, ଗାଁ ଅସନା ହୋଇଯାଏ । ଏହିପରି ସାତଦିନ କଟିଗଲା, କାହାରିକି ବାଘ ଖାଇଲା ନାହିଁ । ତା'ପରେ ଲୋକେ ଟିକଏ ଢିଲା ହୋଇଗଲେ । ତଣଣି ଗ୍ଭଲଣି ପରିବର୍ତ୍ତେ ଦଶ ପାଞ୍ଚ ଏକାଠି ହୋଇ ବାହାରିଲେ । ପୁଣି ବାଘ ଖାଇଲା ।

ବାଘ ଯେପରି ଚରମ ନଦାନ ମୃତ୍ୟୁ । ବାଘର କରାମତି ଦେଖି କେହି ଭୁଲ୍‌ରେ ସୁଦ୍ଧା ଦାଦିବୁଢ଼ାର କରାମତିକୁ ଅବିଶ୍ବାସ କଲେ ନାହିଁ । ଲୋକେ କହନ୍ତି, ଯାହାର କପାଳ ପୋଡ଼େ ତାକୁ ବାଘ ଖାଏ, ଆଉ

କପାଳ ପୋଡ଼ିବ କି ବଢ଼ିବ ତା'ର ତଥ୍ୟ ଦାଦବୁଢ଼ାକୁ ଜଣା । ବାଘ ତାର ଦୂତ । ଏତେଦିନ ଦାଦବୁଢ଼ା ହସୁଥିଲା, ସଂସାରରେ ସୁଖ ଥିଲା । ଆଜି କୌଣସି ଅଜଣା କାରଣରୁ ଦାଦବୁଢ଼ା କୋପ କରିଛି, ତେଣୁ ବୋଧୁ ଲାଗିଛି ଧ୍ୱଂସର ତୋଫାନ, କେବେ ସେ ଥମ୍ବିବ କିଏ ଜାଣେ ?

କାହାର ଜୀବନରେ ଥ'ଇତା ନାହିଁ, ଅକାଳ ଆସିଛି । ଗପକଲେ ଲୋକେ ତର୍କ କରନ୍ତି, କିଏ ସମ୍ଭବତଃ ଦାଦବୁଢ଼ାକୁ ରଗେଇ ଦେଇଥାଇ-ପାରେ । ଯା'ର ତା'ର ଦୋଷ ବଛୁବଛୁ ହୁଅନ୍ତି, କଜିଆ କରନ୍ତି । ଆଗ ଲୋକେ ଧରିଥିଲେ ନାଇକଙ୍କୁ ଆଜି ଅଲେଇ ଢରଆକୁ । ନାଇକ ସେ ଦେଇଥିବା ଭୋଜି ମନେ ପକେଇଦେଲା, ଶାସ୍ତ୍ରପ୍ରକାରେ ଭୋଜି ଦିଆ-ସରିଛି, ଆଉ କି ଦୋଷ ? ଲୋକେ ପରସ୍ପରକୁ ଆଖିଏ ଆଖିଏ ରଖିଲେ । ଏ ତା'ର ସେ ଯା'ର ଦୋଷ ଚିହ୍ନିବାକୁ । କାମିକା ଲୋକ ପଦାରୁ ବାଧା ପାଇ କୌଣସି ସମାଧାନ ନ ପାଇ ଦିନୁଁଦିନ ଚିଡ଼ ଉଠିଲେ । ଖାଲି ଅଶାନ୍ତି ବଢ଼ିଲା । ବାଘ ଖାଉ ଖାଉ ଦିନେ ରାତିରେ ଗାଁକୁ ଆସି କୁଡ଼ିଆଘରୁ ବୁଡ୍ଢା ପରଜାକୁ ଉଠେଇ ନେଇ ଚାଲିଗଲା । ବୁଡ୍ଢା ପରଜାର ସ୍ତ୍ରୀ ପାଟିକରି କାନ୍ଦିଲା, ଲୋକେ ଆସିଲେ । ବୁଡ୍ଢା ପରଜା ଆଉ ଫେରିଲା ନାହିଁ । ଘଟଣା ଦେଖି ଭୟରେ ଲୋକେ ଥରିଲେ । ଏପରି ଏ ଗାଁରେ ହୋଇଛି, ଚାଷ ଜଗିବାକୁ ନୂଆଁ ଜାଳି ଲୋକେ ନଚ୍ଛିଟିଆ କ୍ଷେତରେ କୁଡ଼ିଆକରି ସେଠି ଶୋଇଛନ୍ତି, ସେଠୁ ବାଘ ଉଠେଇ ନେଇ ଖାଇଚି । ଆଉ ଗାଁ ଭିତରୁ ! କ'ଣ ହେଲା ଏ ବର୍ଷ !

ଏହିପରି ପାହାଡ଼ ଦେଶରେ କେତେ ଗାଁ ଉଜୁଡ଼ିଛି, ଆଜି ଆଉ ପତ୍ତା ନାହିଁ । ସେହି ଦଶା ଘୋଟିଗଲା ଏ ଗାଁକୁ ବି । ଘରେ ଘରେ ଉପାସ, ଚୂଲି ଜଳୁ ନାହିଁ । ହସ ଚାଲିଯାଇଛି, ଖାଲି ଶୁଖିଲା ସେମେଠା ମୁହଁ । ଗୋରୁ ଗାଈ ଯାହିବା ବସିଛନ୍ତି, ତାଙ୍କର ହାଡ଼ ବଦାକାଠି ପରି ଗଣି ହେଉଛି । ପ୍ରାଣ ଯାଉଚି କି ଆଉଚି । ଘରୁ ଘରୁ କାନ୍ଦଣା ଉଠୁଚି । ବୁଝେଇବ କାହାକୁ କିଏ । ଆଉ ଲୋକେ ଭାଗ୍ୟ ସାଙ୍ଗେ ଛକାପଞ୍ଝା ଖେଳି ତରଂ ତରଂ ହୋଇ ଚାହିଁ ବସିଛନ୍ତି । କ'ଣ ହେବ କେତେବେଳେ, ଲୋକେ ଚାହିଁ ବସିଛନ୍ତି । ଅଶୁଭ ସୂଚନା କିଛି ହେଲା କି, କାଉ କେଉଁ କେଉଁଦିଗରୁ କେତେଥର କୁଆଡ଼କୁ ଉଡ଼ିଲା । ପେଚ୍ଚା କେଉଁଠୁ

ବୋବେଇଲା । ଶଲୁଆ କେଉଁବାଟେ ଦେଖାପଡ଼ିଲା । ପଡାକୁ ବାହାରିଲେ ଷ କଅଁଳା ବାଛୁରିଟାକୁ ଦେଖି ଡର, ଶଲୁଆକୁ ତ ସହଜେ । ସଞ୍ଜ ବୁଡ଼ିଲେ ଏଠିକା ସେଠିକା ଖଣ୍ଡା ଅଣ୍ଡା ଷ ବାଘ ପଶ ଦଶନ୍ତି । ଲୋକେ ଚୁନଚାନ କୁହାକୋହି ହୁଅନ୍ତି, କୁଦ ଉପରେ ଦାଦବଡ଼ା ପାରେ କୁଆଡ଼େ ବାଘଟା ରାତିରେ ଆସି ବସିଥାଏ, ଆହୁରି ଡର ମାଡ଼େ ।

ବୁଢ଼ା ପରଜାକୁ ନେବା ରାତିରେ ଶାମ ଗୁରୁମାଙ୍କ ମନେ ମନେ ଭାବହେଲା, କ'ଣ ଗୋଟାଏ ନୂଆ ସନ୍ଦେଶ ଯେପରି ତା ପେଟ ଭିତରୁ ଚଳିଯାକେ ଉଠି ଆସୁଛି । ଗାଁର କାଳସୀ ସେ, ଗୁରୁମାଙ୍କ, ଦେଉଁ ଠାକୁର ଗାଁ ଲୋକଙ୍କୁ କଛି ଖବର ପଠେଇବେ ସେ ଶାମ ଗୁରୁମାଙ୍କୁ ନଟେଇ ନଟେଇ ତା ତୁଣ୍ଡରେ କୁହାଇବେ । ଶାମ ଗୁରୁମାଙ୍କ ଭାରି ଡଗଲୁଚା ଲୋକ । ଆଜ ତା'ର ମନେହେଲା କୌଣସି ଦେବତା ଯେପରି ତା ହାତ ଧରି କୁହାଇବ କୁହାଇବ ହେଉଛି । ସକାଳ ହେଲା, ଶାମ ଗୁରୁମାଙ୍କର ନବନାର ଜୋର ନିଶାଏ ମାଡ଼ା ପଡ଼ିଗଲା । ସଞ୍ଜ ବୁଡ଼ିଲା, ପୁଣି ତା'ର ଭାବନା ବଢ଼ିଲା । ସେହି ରାତିରେ ମହାବଳ ବାଘ ଗାଁ ଗୁରପାଖେ ମର୍ଚ୍ଛିତ ମାର ଘୋର ଗର୍ଜନ କଲା । ଘରର ଗୁଳ ଶବ୍ଦ-ରେ ଥରଯାଏ, ଲୋକେ ଭୟରେ କଣ୍ଟାକଣ୍ଟି ହୁଅନ୍ତି । ପିଲାଏ କାନ୍ଦିବାକୁ ଆରମ୍ଭ କର ଥପ କର ବନ୍ଦ ହୋଇଯାଆନ୍ତି । ଶାମ ଗୁରୁମାଙ୍କ ଆପଣା ଘରେ ଭୟରେ ଥରୁଥାଏ । ଥର ଥର ସେ ଭାବୁଥାଏ, ସେ ଶାମ ଗୁରୁମାଙ୍କ ନୁହେଁ, ସେ ଯେମିତି ଅନ୍ୟ ଜଣେ କିଏ । କେଉଁ ଦେବତା ଯେ ଗୁରୁମାଙ୍କର ମନଟା ଦଖଲ କରି ନେଇଯାଇଛି । ପଛଥର ବାଘ ରଡ଼ି ଛାଡ଼ିଲେ ସେଇ ଘଡ଼ଘଡ଼ିର ଉପଦ୍ରବରେ ଚାଟିଁ ଆଣା କରିଥିବା ଦେବତାର କଥା ତା'ର ବାଣୀ ମୁହଁ ପଡାକୁ ବାହାରିବାକୁ ଚେଷ୍ଟାକଲେ । ଦେବତାର ବାହନ ହୋଇ ଶାମ ଗୁରୁମାଙ୍କ ବଳଦ୍ଧାମନ ମନ ଥରେ । ତା'ର ଆଖି ଦମକୁ ମନ୍ଦ ନାହିଁ, ସକାଳ ମାଡ଼ିଲା ତ ସେ ପାଳ ହଣାଣ ରଙ୍ଗାଜାନକୁ ଧରିଲା, ଦେଖିବ ଦେଖିବ ତାକୁ ଲାଗିଲା ସବୁ କଥା କହିଲା । ନଆ ହଣାଣ ପୁରଣା ଗୁରୁମାଙ୍କ କଥାରେ ଅବିଶ୍ୱାସ କରିବାକୁ ଅଧିକାର ନାହିଁ । ସାଙ୍ଗେ ସାଙ୍ଗେ ରଙ୍ଗାଜାନ ନାଇକ ପାଖକୁ ଗଲା, ମହୁରିଆ ପାଖକୁ ଗଲା, ବାଇଦ ମଣ୍ଡଳ ଜାକଣ୍ଡିଲେ ଗଲେଇଲା । ଭାଗି ମୁହଁରେ

ପାଣି ନ ବଢ଼ନ୍ତୁ ଲୋକେ ଯାଇ ଗାଁ ଭେଣ୍ଡମଣ୍ (ମହିଦାଣ୍ଡ)ରେ ଜମାହେଲେ, ଯେଉଁଠି ତାଙ୍କର ପିତୃପୁରୁଷଙ୍କ ସ୍ମୃତି ସକାଶେ ଗୋଳଆପଥର ଆଜି ଚଟା ପଥର ରହିଛି । ଯେଉଁଠି ନାଚଠୁ ପଞ୍ଚାଇତଯାକେ ସବୁ ହୁଏ ।

ଲୋକେ ଧକାଧକ ଠେଲାଠେଲି ହୋଇ ରୁଣ୍ଡିଲେ, ଶାମ ଗୁରୁମାଣ୍ଡ ପାଗଳ ପରି ନାଚୁଥାଏ, ବଣାର ମନ୍ତ୍ର ପଢ଼ୁଥାଏ, ମାଟିରେ କୁକୁଡ଼ା କାଟି ତା'ର ରକ୍ତ ଢାଳୁଥାଏ, ମଦ ଢାଳୁଥାଏ । ଗୁରୁମାଣ୍ଡ ନାଚ ନାଚ ଆହୁରି ପାଗଳ ହୋଇଗଲା । ଆଖିରେ ଅସ୍ୱାଭାବିକ ଜ୍ୟୋତି, ମୁହଁରେ ଅସ୍ୱାଭାବିକ ଝୁରତା, ନାଚେ, ଲୋଟେ, ଗଡ଼େ, ନାଚେ, ଦଳର କାହାକୁ କାହାକୁ ଗୋଡ଼ାଏ, ବାଜାଦାରକୁ ପିଟେ । ବଡ ବିକଟ ନାଚ ସେ, ତାଟଙ୍କା ହୋଇ ଲୋକେ ଦେଖୁଥାନ୍ତି, ଆଜି ଫୁସୁରୁ ଫୁସୁରୁ ହେଉଥାନ୍ତି, ସକାନ୍ତୁ ଏ କି ଅମଙ୍ଗଳ ସୂଚନା !

ନାଚ ନାଚ ଥେ ହୋଇ ଗୁରୁମାଣ୍ଡ ଗୋଟାଏ ବିକଟାଳ ହସଟାଏ ହସି ଫାଟିପଡ଼ିଲା । ଲୋକେ କତିକୁକତି ଘୁଞ୍ଚିଗଲେ । ଗୁରୁମାଣ୍ଡ ହାଃ ହାଃ ହାଃ ହାଃ ହାଃ ହୋଇ ଆଖି ତରଟି ଜଭ ଲହ ଲହ କରି ଦାନ୍ତ ଦେଖେଇ କହିଲା, ଖାଇବି ଖାଇବି ଖାଇବି । ଗଣି ଗଣି ଖାଇଦେଲି ଦୁଇକୋଡ଼ି ଜଣ, ଦୁଇକୋଡ଼ି ଜଣ—ଖାଇଦେଲି ।

ମୁହଁ ହରଡ଼ିଆ କରି ନିଶ୍ୱାସ ରୋକି ଲୋକେ ଶୁଣିଲେ, ସେ କହିଲା—ମୁଁ ସବୁଠୁ ବଡ଼ ଠାକୁର ବାଘବୁଢ଼ା, ସବୁ ମୁଁ ଗଢେଁ ସବୁ ମୁଁ ଭାଙ୍ଗେ, ଯେତେବେଳେ ଯୋଉଟା ହୁଏ ମୋର ମନ । ଯାହାକୁ ମୋର ମନ ହେଲା ଖାଇଦେଲି, ଯାହାକୁ ଇଚ୍ଛା ରଖିଲି, ମୋ ଇଚ୍ଛା, ମୋ ମନ, ମୁଁ ସବୁଠୁ ବଡ଼ଠାକୁର ବାଘବୁଢ଼ା । କି ପାଇଁ କସ୍ ମୁଁ କରେ ମତେ ପଚ୍ଚରି ନାହିଁ, ସେଟା ମତେ ଏକା ଜଣା, ମୁଁ ସବୁଠୁ ବଡ଼, ବାଘବୁଢା, ମତେ ପଚ୍ଚରି ନାହିଁ, ମୁଁ କହିବି ନାହିଁ । ଖାଇବାର ଇଚ୍ଛା ହେଲା ଯାହାକୁ ତାକୁ ଖାଇଦେଲି, ରଖିବାର ଇଚ୍ଛା ଯାହାକୁ ହେଲା ତାକୁ ବଞ୍ଚେଇ ରଖିଛି ଏ ପର୍ଯ୍ୟନ୍ତ । ମାତ୍ର ଗୋଟେ କଥା କହିବି କହିବି ହଉଚି ତୁମମାନଙ୍କୁ । ଏ ଆଖପାଖରେ ବେଶୀ ବାଘ-ଡୁମା (ଯାହାକୁ ବାଘ ଖାଏ ତା'ର ପ୍ରେତାତ୍ମା)ମାନେ ଏବେ ରହିଗଲେ । ତୁମେ ସବୁ ଏ ଗାଁ ଭାଙ୍ଗିଦେଇ

ଏଠୁ ଉଠି ଚାଲିଯାଅ । ନଇଲେ ତୁମର ଭଲ ହେବ ନାହିଁ । ତୁମକୁ ମୁଁ ସର୍ଜନ କରିଛି । ତୁମର ସୁଖ ହେଲେ ମୋର ସୁଖ, ସେଥିପାଇଁ ତୁମକୁ ଚେତେଇ ଦଉଚି, ଯାଅ ପିଲାମାନେ, ଏ ଗାଁ ଛାଡ଼ିଦେଇ ଚାଲିଯାଅ । ବେଳ ଉଦବା ବାଟକୁ ଗାଦ ପାବ୍ଲ ଡଙ୍ଗରଚଳେ ବଦ୍ଧଚ ଜାଗା ପଡ଼ିଚି । ସେଠି ଯାଇ ଘର ଦୁଆର କର, ଏ ଜାଗା ଛାଡ଼ି ଚାଲିଯାଅ । ଏଠିକ ମୋର ସାଙ୍ଗୀ ଦେବତାମାନେ ବୁଲବୁଲ ହେବେ । ବାଘଭାଲୁମାମାନେ ରହିବେ । ଏଠି ତୁମୁକୁ ଭଲ ନାହିଁ । ଯେତେ ଚଞ୍ଚଳ ପାର ବାହାରି ଚାଲିଯାଅ ତୁମେ, ସେଠି ଅଧିକ ଭଲ ହେବ । ତୁମେ ଯେଣେ ଯାଅ ତୁମ ସୁଖ ଦୁଃଖ ବୁଝିବାକୁ ସବୁବେଳେ ମୁଁ ଥିବ ତୁମ ପାଖେ ପାଖେ—ଯାଅ, ଯାଅ, ଯାଅ—

ଗାଁର ସବୁ ଲୋକେ ଲମ୍ବ ହୋଇ ଭୂଇଁରେ ଦଣ୍ଡବତ ହୋଇ କହିଲେ—ଦାଦବୁଢ଼ା, ତୋର ଇଚ୍ଛା, ତୋର ଦୟା, ରଖିଲେ ତୁ ରଖ ମାରିଲେ ତୁ ମାର, ମାଇ ତୋ କଥା ଆମେ ମେଡ଼ିବୁ ନାହିଁ (ଅମାନ୍ୟ କରିବୁ ନାହିଁ), ତୁଇ କହିଲା ପ୍ରକାରେ ଆମେ ଯିବୁ, ଏକା ତୋର ଦୟା ପ୍ରଭୁ ।

ଶାମ ଗୁରୁମାଈ ବେହୋସ ହୋଇ ପଡ଼ିଗଲା; ତା'ର ଠାକୁର ଛାଡ଼ି ଯାଇଥିଲ ।

—୧୮—

ଗାଁରେ ଚହଳ ପଡ଼ିଗଲା, ଗାଁ ଭାଙ୍ଗିବାକୁ ପଡ଼ିବ, କେତେ କାଳର ପୁରୁଣା ଗାଁ ଛାଡ଼ି ଚାଲିଯିବାକୁ ପଡ଼ିବ, ପିତୃପୁରୁଷଙ୍କ ହାଡ଼ ପାଉଁଶ ପଛରେ ରହିଯିବ, ଆଉ ଗାଁ ଦାଣ୍ଡର ଯେତେ ଗୋଜା ପଥର ଚଟା ପଥର । ଗାଦ ପାବ୍ଲ ଡଙ୍ଗର ଏଠୁ ଦୁର ନୁହେଁ, ମଝିରେ ଆଡୁକା କରୁଛି ପାଚେଡ଼ି ପର୍ବତ ଆଉ ଚଲବେଡ଼ା ଜଙ୍ଗଲ; କୋହିଲେ ଦଶନ୍ତା । ସେଠି ଗାଁ ବାନ୍ଧିବାକୁ କେଉଁଠି ଥଳ ଅଛି, ବା ଚାଷ ଭୂମି, କିନ୍ତୁ ଦାଦବୁଢ଼ାର ଆଦେଶ ଅମାନ୍ୟ କରି ହେବ ନାହିଁ, ଯିବାକୁ ହିଁ ହେବ ।

ଏଇ ଶୀତ ଗୋଟାକ ଗଲେ ବଣ ଶୁଖିଯିବ, ତାପରେ ବାଦ ଦାଉ ଜଣା ଅଧିକ କମିଯିବ । ସେତେବେଳେ ହୁଏତ ଏଗାଁର ଭୂମି ଚାଷ

କରିବାକୁ ବାଧା ନ ଥିବ । କିନ୍ତୁ ନା, ଠେଲିଦେବାକୁ ଗ୍ଲାନି ନାହିଁ କାହାରି । ଦାଢ଼ିବୁଢ଼ା ଯାହା କହିଦେଲେ ସେଇ ନିଷ୍ପତ୍ତି ମୁଣ୍ଡ ପାତି ନେବାକୁ ପଡ଼ିବ । ଯିବାକୁ ହିଁ ହେବ ।

ଏଲିଓ ପ୍ରାଚୀନ ନାଇକକୁ ଡାକି କହିଲେ, ବାପ୍ପା ହେଲୁ ନାଇକ ? କି ଦାଢ଼ିବୁଢ଼ା, ଫାଢ଼ିବୁଢ଼ା; ପିତୃପୁରୁଷ ବସିଥିଲେ ଥାନ ଛାଡ଼ିଦେଇ କୁଆଡ଼େ ଯିବୁ ବାହାରିକି ? ଏତେ ଯତ୍ନରେ ବନ୍ଧା ଘର ଦୁଆର, ଏତେ ଭୂମି ବାଡ଼, ସେଠି କ'ଣ ଅଛି ଯିବୁ ?

ନାଇକ ଦୀର୍ଘ ନିଶ୍ୱାସ ପକେଇ ପକେଇ ଗାଁକୁ ଅନେଇଁ ତୁନି ଚାପି ଠିଆ ହୋଇଥାଏ ।

କାହିଁକି ଚାଲିଯିବୁ ନାଇକ ? ମୁଁ ବୁଢ଼ାଲୋକ ମୋ କଥା ମାନ୍, ଖବର ପଡ଼ିଲେ ଏ ବଢ଼େଇ ଛାଡ଼ି ଯାଇଥିବ, କାହିଁକି ପର୍ ଦେଶରେ ଯାଇ ହରବର ହବା ? ମରିବାଟା ଥିଲେ କିଏ ସେ ଅଟକେଇବ, ସେ ସବୁ ବାପ୍ପା କଥା ଛାଡ଼ି ।

•

ଗୋଟାଏ ପାଖେ ଗାଁ ଆରପାଖେ କୂଦ ଉପରେ ବିରାଜମାନ ଦାଢ଼ିବୁଢ଼ା, ତାକୁ ମଝିରେ ରଖି ଦୁଇପାଖେ କ୍ଷେତ । ନାଇକ ମୁଣ୍ଡ ହଲେଇଲା । କହିଲା, ଦୁଇକୋଡ଼ି ତିନିଜଣ ଲୋକକୁ ବାଘ ଧରି ଧରି ଖାଇଦେଲା, ଗୋରୁ ଗାଈ ଯେତେ ଥିଲେ ସମସ୍ତେ ବେମାରିରେ ପଡ଼ି ମଲେ, ଆଜି ଏଠି କି ପାଇଁ ? ତୁମ ଧର୍ମରେ ଦାଢ଼ିବୁଢ଼ା ନାହିଁ, ଆମ ଧର୍ମରେ ଅଛି, ଦାଢ଼ିବୁଢ଼ା କହିଦେଇଛି, ଏବେ ତୁମର ଇଚ୍ଛା; ଆମ୍ଭକୁ ଧରିବ, କି ତୁମ ଧର୍ମକୁ ଧରି ରହିବ ?

ଏଲିଓ ପ୍ରାଚୀନ୍ ଆହୁରି ବୁଝେଇ ବସିଲେ । ନାଇକ ଏକା ରି ଧରିଥାଏ, ଆଜି ଏଠି କି ପାଇଁ ? ଏଣିକି ଯେପରି ତା'ର ମନଗହ୍ୱରର ନିଭୃତ ଅଭିଯୋଗ । କେଉଁଦିନୁଁ ତ ବାଜି ରହିଛି, ଦାଢ଼ିବୁଢ଼ା ଖାଲି ତା'ର ଉପଲକ୍ଷ ସିନା !

ତା'ର ଠେଙ୍ଗାଜାନି ଚାଲିଯାଇଛି, ବାହା ଭାଙ୍ଗିପଡ଼ିଛି, ଯେଉଁଠି ବସିଲେ ତା'ର ଏକା କଥା, ଏଠି ଆଜି ଅଧିକା ହୁଅନ୍ତା କଣ ? ଏଲିଓ

ପ୍ରାଚୀନ୍ ସାହ୍ମିଙ୍କୁ ଯାଇ ଜାଣି ଭାଇଙ୍କୁ ଡାକ ବହୁତ ପ୍ରକାର ବୁଝେଇଲା, ଏ ପରଜା ଲୋକ ଭାରି ଡରୁଆ, ଆଜ ଏମିତି ମଣିଷ ଯାହା ବୁଝିଲେ ସେଇଆ । ଏମାନେ ଯିବେ ଯାଉନ୍ତୁ, ଆମେ କାହିଁକି ଯିବୁ ? ଏଥିର ତ ଗାଁ ଗୁଡ଼ ସ୍ଥଳ ଯାଉଛନ୍ତି, ମାଗ ଦେଲେ ଜମିବାଡ଼ ଶସ୍ତାରେ ଆମ୍ଭଙ୍କୁ ଛାଡ଼ଦେବେ, ଆମେ ଏଠି ରହିବା, ସେମାନେ ଯାଉନ୍ତୁ । ମୋଟେ ଦଶଘର ବାରଘର ଡମ୍, ଏଲେଓ ତାଙ୍କୁ ବୁଝେଇ ପାରିଲା ନାହିଁ । ସେମାନେ କହିଲେ, ଏ ବଣ ଭିତରେ ଏକୁଟିଆ ଆମେ ରହି କ ଫଳ ? ସେ୍ତ ଯେଉଁ ବନସ୍ତ, ତହିଁରେ ପୁଣି ବାଘଡ଼ର । ଘରୁ ବାହାରିବାକୁ ହେବ ନାହିଁ, କାହାର ଜୀବନକୁ ଡର ନାହିଁ ଏଠି ଏକୁଟିଆଟା ପଡ଼ିଥିବ ? ସେମାନେ ସକାଳେ ଗାଁ ଦାଣ୍ଡରେ ଗୁ ରୁମାଣର ଢକଟାଳ ନାଟ ଦେଖିଥିଲେ, ତା'ର କଥା ଶୁଣୁଥିଲେ । ମନଭିତର କେଉଁ ଆଦିମ ବିଶ୍ୱାସ ଭୂଇଁରେ ଦାଦବୁଢ଼ାର ଚେର ପଶିଥିଲା । ଏଲେଓ ପ୍ରାଚୀନ୍ ପାରିଲା ନାହିଁ ।

ଦଶାର ଯାଇ ନୂଆ ସ୍ଥଳୀରେ ଶୁଭ ଦେଲା । ନାଇକ ଓ ରଇତମାନେ ଯାଇ ସେଠି ଖୁଣ୍ଟ ପକେଇଲେ । ଏପାଖେ ଗାଢ ପାହ୍‌ଲ ପର୍ବତ ସେପାଖେ ପାଟେଡ଼ ପର୍ବତ, ମଝିରେ ଖୁବ୍ ବଡ଼ ଉପତ୍ୟକା । ସେଠି ଏବେ ଜଙ୍ଗଲ ଭର୍ତ୍ତି, କ୍ରମେ କ୍ରମେ ଜଙ୍ଗଲ ଯାଇ ବହେଇ ହୋଇଯିବ ଧାନଜମି ମାଣ୍ଡିଆ ଜମି । ଗାଢ ପାହ୍‌ଲର ଡାଲୁ ତଳେ ନୂଆ ଗାଁ, ସେଠି ମୂରନ୍ ନଈ ଓସାରିଆ ହୋଇଛି । ଢପାଖ ପର୍ବତରୁ ନଈ ଆଡ଼କୁ ବୋହି ଆସୁଛି କେତେ ମଠୁଆ ମଠୁଆ ଝୋଲା । ସେଇଆକୁ ବଗିଡ଼ା କରିଦେଇ ବନ୍ଧ ପକେଇଦେଲେ ଅନେକ ଧାନ ଜମି ବାହାରି ପଡ଼ିବ । ଏହି ବର୍ଷ ଖରାଦିନେ ଢପାଖ ପର୍ବତ ଡାଲୁରେ ଗଛ ହାଣିଦେଇ ନିଆଁ ଲଗେଇଦେଲେ ସବୁ ସଫା ହୋଇଯିବ । ତାପରେ ବାହାରିବ ମାଣ୍ଡିଆ ପଦର, ସୁଆଁ ପଦର, ଅଳସି ପଦର, ହରଡ଼ ପାଇଁ ଜଡ଼ା ପାଇଁ କ୍ଷେତ । ଦାଦବୁଢ଼ା କହିଛି ଏଠି ଆହୁରି ଅଧିକ ଭଲ ହେବ ।

ଜମି ଚଷିବାକୁ ଦାଦବୁଢ଼ା ମନା କରି ନାହିଁ । ସେ ଗାଁର ଜମି ଏଗାଁର ଜମି, ଯେତେବେଳ ଭୁଲେଇ ହେବ ଦୁଇଗାଁର ଜମି । ପାଟେଡ଼ ପର୍ବତ ଆଡ଼ୁକା କରିଛି ସିନା, ହେଇ ଏହାର ସେ ପାଖଟା ତ ।

ଗାର ସାହିସବୁ ଚିହ୍ନଟ ହେଲ, ଘରଜା ସାହି, ଡମ୍ ସାହି, ମହି ରାସ୍ତା, ପାଣି ଆଣିଯିବା ରାସ୍ତା, ଗାଧୁଆ ତୁଠସବୁ, ସେଠି ପୂଜା ହଆ ହେଲ, ସବୁ ପବନ୍ଧ କରାହେଲା । ଆଗ ସାନ ସାନ ଛାଳପତ୍ରର କୁଡ଼ିଆ, ତାପରେ ଘର ତିଆରି ହେବ, ଅଳ୍ପ ଅଳ୍ପ ହୋଇ । ଟିକଏ କଷ୍ଟ ପଡ଼ିବ, ପରେ ସବୁ ସୁଧୁରିଯିବ ।

ଦିନ ପାଞ୍ଚଟାରେ ସବୁ ଜିନିଷ ବୁହାହୋଇ ଗଲା । ପୁରୁଣା ସ୍ଥଳରୁ ଭଲ ଭଲ କାଠ ବାଉଁଶ ସୁଦ୍ଧା ଘରର ଛାଟି, କବାଟ, ଚୌକାଠ, ପୁରୁଣା ଗାଁରୁ ନୂଆ ଗାଁକୁ ଧାର ଲଗି ଲଗି ଦିନେ ଧାର ବି ବନ୍ଦହେଲା ।

ପୁରୁଣା ଗାଁ ଭାଙ୍ଗିଗଲା, ନୂଆ ଗାଁ ଗଢ଼ା ଆରମ୍ଭ ହେଲା ।

ସେମାନେ ଚାଲିଗଲେ—

ଛାଡ଼ି ଦେଇ ଗଲେ ଖାଲି ମହିଦାଣ୍ଡରେ ଗୁଡ଼ାଏ ଗୋଜିଆ ପଥର ଚଟା, ପଥର ଫଟା, ଉଦରା ହଡଶ୍ରୀକାଗୁଡ଼ାଏ ଘର, ନଭିଲା ଚୁଲିର କୁଡ଼ କୁଡ଼ ପାଉଁଶ ।

ସେମାନେ ଚାଲିଗଲେ ଗୋଟାଏ ତୋଫାନ ପରି, ଆଜି ଏବେ ସବୁ ଶୂନ୍‌ଶାନ୍ । ଏଠି ଆଜି ଛାତଭିତରୁ ଧୂଆଁ ଉଠିବ ନାହିଁ, ଦାଣ୍ଡରେ ଗୋବର ଅଳିଆ କୁଡ଼ ହେବ ନାହିଁ, ଘର ଦୁଆରେ ପିଲାଏ ଧୂଳି କରିବେ ନାହିଁ । ସଞ୍ଜବୁଡ଼େ ପାଖ ବଣରୁ ରାସ୍ତାଏ ରାସ୍ତାଏ ଗୋରୁ ମଣିଷଙ୍କ ଧାର ଲଗିବ ନାହିଁ । ଜହ୍ନ ରାତିରେ ହୁଲହୁଲ୍ ହୋଇ ନାଚ ଲଗିବ ନାହିଁ ।

କଳ ଗୋଳ ନାହିଁ, ହସ ଖୁସି ନାହିଁ, ଚରିଆଡ଼ୁ ସବୁ ଶୁନଶାନ ।

ଆଜି କୁଦ ଉପରେ ଖଜୁରି ଗଛର ଦାଢ଼ିବୁଢ଼ା, ଯାହାକୁ ମଣିଷ ଗଢ଼ିଥିଲା, ଯାହାକୁ ମଣିଷ ଛାଡ଼ିଦେଇ ଚାଲିଗଲେ ତା'ର ପିଣ୍ଡ ବି ଏ ପରିତ୍ୟକ୍ତ ଧ୍ୱଂସ ଭିତରେ ଗୋଟାଏ ଶବ । ତା'ର ଅମର ଆତ୍ମା ଜନ୍ମ ହେବ ଯାଇ ଆଜି କେଉଁ ଗାଁରେ । ସେଠି ପୁଣି ସେ ଧାଂଙ୍ଗଡ଼ୀ ନଚେଇବ । ମୁଥ ମୁଥ କରି ଛୁଆପିଲା ଅଜାଡ଼ି ଦେବ ଆମ୍ବ କଷି ପରି । ଭେଳିକି ଲଗେଇବ । ଅଜାଡ଼ି ଦେବ । ଧୋଇ ମରୁଡ଼ି ମଡ଼କ ଚିରନ୍ତନ ସେ ।

ଧୀରେ ଧୀରେ ବୃକ୍ଷସବୁ ଭାଙ୍ଗିପଡ଼ିଲା, ଉଇ ଧାର ଲାଗିଗଲେ; କାନ୍ଥ ଭାଙ୍ଗି ଯାଇ ହେଲା ମାଟିକୁଢ଼, ଜଙ୍ଗଲ ବୃପି ଆସିଲା ମାଡ଼ି ଆସିଲା, କେଉଁଠା ଏଠି ଧାଂଡ଼ୀବସା ଧାଂଡ଼ୀବସା ଘର ଯେଉଁଠି ଝୋକାଏ ଝୋକଏ ରାତ୍ତ ରାତ୍ତ ଅନିଦ୍ରା ହୋଇ ଗୀତରେ ଢୁଙ୍ଗଢୁଙ୍ଗାରେ ଭଲ ଖାଇବାର ପସରା ମେଲି ଦେଉଥିଲେ ? ଠେଙ୍ଗାଜାନ ସାଉଆଦାନ୍ ବାନ୍ଧା ହୋଇଥାନ୍ତେ, ଘର କରିଥାନ୍ତେ, କେଉଁଠା ଏଠି ସେ ଅଧା ଛୋଟା ଘର, କାହିଁ ?

କୁଦ ଉପରେ ହୁଙ୍କାବୁଢ଼ା ଦାଦବୁଢ଼ାର ଉପରେ ମାଡ଼ି ବସିଲା । ଦୁଇ ବୁଢ଼ା ହେଲେ ଏକ ଅଦ୍ୱୈତ ।

